ଦାଦା ଭଗବାନ ପ୍ରରୂପିତ

# ପ୍ରତିକ୍ରମଣ

ମୂଳ ଗୁଜରାଟୀ ସଙ୍କଳନ : ଡା. ନୀରୁବେନ ଅମୀନ

ଅନୁବାଦ : ମହାତ୍ମାଗଣ

ପ୍ରକାଶକ : ଶ୍ରୀ ଅଜିତ୍ ସି. ପଟେଲ
ଦାଦା ଭଗବାନ ଆରାଧନା ଟ୍ରଷ୍ଟ
୫, ମମତା ପାର୍କ ସୋସାଇଟୀ, ନବଗୁଜରାଟ
କଲେଜ ପଛ, ଉସ୍ମାନପୁରା,
ଅହମଦାବାଦ୍-୩୮୦୦୧୪, ଗୁଜରାଟ
ଫୋନ୍ : (୦୭୯) ୩୯୮୩୦୧୦୦



ପ୍ରଥମ ସଂସ୍କରଣ : ବହି ସଂଖ୍ୟା ୧୦୦୦ ନଭେମ୍ବର ୨୦୧୮

ଭାବ ମୂଲ୍ୟ : 'ପରମ ବିନୟ' ଏବଂ
'ମୁଁ କିଛି ମଧ୍ୟ ଜାଣି ନାହିଁ', ଏହି ଭାବ !

ଦ୍ରବ୍ୟ ମୂଲ୍ୟ : ୪୦ ଟଙ୍କା

ମୁଦ୍ରକ : ଅମ୍ବା ଅଫ୍‌ସେଟ୍
B-99, ଇଲେକ୍ଟ୍ରୋନିକ୍ସ G.I.D.C, K-6 ରୋଡ଼,
ସେକ୍ଟର-୨୫, ଗାନ୍ଧୀନଗର - ୩୮୨୦୪୪
ଫୋନ୍ : (୦୭୯) ୩୯୮୩୦୩୪୧/୪୨

# ତ୍ରିମନ୍ତ୍ର








ନମୋ ଅରିହଂତାଣଂ
ନମୋ ସିଦ୍ଧାଣଂ
ନମୋ ଆୟରିୟାଣଂ
ନମୋ ଉବଜ୍ଝାୟାଣଂ
ନମୋ ଲୋଏ ସବ୍ବସାହୁଣଂ
ଏସୋ ପଞ୍ଚ ନମୁକ୍କାରୋ,
ସବ୍ବ ପାବପ୍ପଣାସଣୋ
ମଙ୍ଗଲାଣଂ ଚ ସବ୍ବେସିଂ,
ପଢମଂ ହବଇ ମଙ୍ଗଲମ୍ ।। ୧ ।।
ଓଁ ନମୋ ଭଗବତେ ବାସୁଦେବାୟ ।।୨।।
ଓଁ ନମଃ ଶିବାୟ ।। ୩ ।।
।। ଜୟ ସଚ୍ଚିଦାନନ୍ଦ ।।



# ସମର୍ପଣ

ଅତିକ୍ରମଣର ଅନନ୍ତ ଫଟକାର;
କ୍ଷଣେ-କ୍ଷଣେ ବନ୍ଧାହୁଏ କର୍ମର ହାରମାଳ !
ମୋକ୍ଷ ତ ଛାଡ଼୍, ଧର୍ମ ବି ନିରାଧାର;
କିଏ ଚଢ଼ାଇବ ପାହାଚ ସେ ମାର୍ଗର ?

ଅକ୍ରମ ବିଜ୍ଞାନୀ ଦାଦା ତାରଣହାର;
ପ୍ରତିକ୍ରମଣର ଦେଲେ ହତିଆର !
ମୋକ୍ଷ ମାର୍ଗର ସଚ୍ଚା ସାଥୀଦାର;
ତାଜ୍ ହୋଇ ଶୋଭେ ଦାଦା ଦରବାର !

'ପ୍ରତିକ୍ରମଣ' ସଂକ୍ଷିପ୍ତ ଅଟେ କ୍ରିୟାକାରୀ;
ଭାଙ୍ଗେ ବନ୍ଧନ ମୂଳ ଅହଂକାରୀ !
ପ୍ରତିକ୍ରମଣ ବିଜ୍ଞାନ ହୋଇଛି ଏଠି ସାକାର;
'ସମର୍ପଣ' ଜଗତକୁ, ମଚାଅ ଜୟ ଜୟକାର !

# ନିବେଦନ

ଆତ୍ମବିଜ୍ଞାନୀ ଶ୍ରୀ ଅମ୍ବାଲାଲ ମୂଳ୍‌ଜୀଭାଇ ପଟେଲ, ଯାହାଙ୍କୁ ଲୋକେ 'ଦାଦା ଭଗବାନ' ନାମରେ ମଧ୍ୟ ଜାଣନ୍ତି, ତାଙ୍କ ଶ୍ରୀମୁଖରୁ ଅଧ୍ୟାତ୍ମ ତଥା ବ୍ୟବହାର ଜ୍ଞାନ ସମ୍ବନ୍ଧୀୟ ଯେଉଁ ବାଣୀ ବାହାରିଛି, ସେସବୁକୁ ରେକର୍ଡ କରି, ସଙ୍କଳନ ତଥା ସମ୍ପାଦନ କରି ପୁସ୍ତକ ରୂପରେ ପ୍ରକାଶିତ କରାଯାଉଛି ।

ପ୍ରସ୍ତୁତ ଅନୁବାଦରେ ଏହା ବିଶେଷ ଧ୍ୟାନ ରଖାଯାଇଛି ଯେ, ପାଠକଙ୍କୁ ଦାଦାଶ୍ରୀଙ୍କର ହିଁ ବାଣୀ ଶୁଣାଯାଉଛି, ଏପରି ଅନୁଭବ ହେଉ, ଯେଉଁ କାରଣରୁ ବୋଧହୁଏ କିଛି ଜାଗାରେ ଅନୁବାଦର ବାକ୍ୟ ରଚନା ଓଡ଼ିଆ ବ୍ୟାକରଣ ଅନୁସାରେ ତ୍ରୁଟିପୂର୍ଣ୍ଣ ଲାଗିପାରେ, କିନ୍ତୁ ଏଠାରେ ଯଦି ଆଶୟ(ହେତୁ)କୁ ବୁଝି ପଢ଼ାଯିବ, ତେବେ ଅଧିକ ଲାଭକାରୀ ହେବ ।

ଜ୍ଞାନୀଙ୍କ ବାଣୀକୁ ଓଡ଼ିଆ ଭାଷାରେ ଯଥାର୍ଥ ରୂପରେ ଅନୁବାଦ କରିବାର ପ୍ରୟାସ କରାଯାଇଛି । ପ୍ରସ୍ତୁତ ପୁସ୍ତକରେ ଅନେକ ଜାଗାରେ ବନ୍ଧନୀରେ ଦର୍ଶାଯାଇଥିବା ଶବ୍ଦ ବା ବାକ୍ୟ ପରମପୂଜ୍ୟ ଦାଦାଶ୍ରୀଙ୍କ ଦ୍ୱାରା କୁହାଯାଇଥିବା ବାକ୍ୟକୁ ଅଧିକ ସ୍ପଷ୍ଟତାପୂର୍ବକ ବୁଝାଇବା ହେତୁ ଲେଖାଯାଇଛି । ଯେବେକି କିଛି ଜାଗାରେ ଇଂରାଜୀ ଶବ୍ଦକୁ ଓଡ଼ିଆ ଅର୍ଥରୂପରେ ରଖାଯାଇଛି । ଦାଦାଶ୍ରୀଙ୍କ ଶ୍ରୀମୁଖରୁ ବାହାରିଥିବା କିଛି ଗୁଜରାଟୀ ଶବ୍ଦ ଯେମିତିକୁ ସେମିତି ରଖାଯାଇଛି, କାରଣ ସେ ଶବ୍ଦଗୁଡ଼ିକ ପାଇଁ ଓଡ଼ିଆରେ ଏପରି କିଛି ଶବ୍ଦ ନାହିଁ, ଯାହା ତାହାର ପୂର୍ଣ୍ଣ ଅର୍ଥ ଦେଇପାରିବ ।

ଅନୁବାଦଜନିତ ତ୍ରୁଟି ପାଇଁ ଆପଣଙ୍କ ପାଖରେ କ୍ଷମାପ୍ରାର୍ଥୀ ଅଟୁ ।



# 'ଦାଦା ଭଗବାନ' କିଏ ?

ଜୁନ୍ ୧୯୫୮ରେ ଏକ ସନ୍ଧ୍ୟା, ସମୟ ପାଖାପାଖି ଛ'ଟା, ଭିଡ଼ରେ ଭରା ସୁରଟ ସହରର ରେଲୱେ ଷ୍ଟେସନ୍, ପ୍ଲାଟ୍‌ଫର୍ମ ନମ୍ବର ୩ର ବେଞ୍ଚ ଉପରେ ବସିଥିବା ଶ୍ରୀ ଅମ୍ବାଲାଲ୍ ମୁଲ୍‌ଜୀଭାଇ ପଟେଲ୍ ରୂପୀ ଦେହମନ୍ଦିରରେ ପ୍ରାକୃତିକ ରୀତିରେ, ଅକ୍ରମ ରୂପରେ, କେତେ ଜନ୍ମରୁ ବ୍ୟକ୍ତ ହେବାପାଇଁ ଆତୁର 'ଦାଦା ଭଗବାନ' ପୂର୍ଣ୍ଣ ରୂପରେ ପ୍ରକଟ ହେଲେ । ଏବଂ ପ୍ରକୃତି ସର୍ଜିତ କଲା ଅଧ୍ୟାତ୍ମର ଅଦ୍ଭୁତ ଆଶ୍ଚର୍ଯ୍ୟ । ଏକ ଘଣ୍ଟାରେ ତାଙ୍କୁ ବିଶ୍ୱଦର୍ଶନ ହେଲା । 'ମୁଁ କିଏ ? ଭଗବାନ କିଏ ? ଜଗତ କିଏ ଚଲାଉଛି ? କର୍ମ କ'ଣ ? ମୁକ୍ତି କ'ଣ ?' ଇତ୍ୟାଦି ଜଗତର ସମସ୍ତ ଆଧ୍ୟାତ୍ମିକ ପ୍ରଶ୍ନର ସଂପୂର୍ଣ୍ଣ ରହସ୍ୟ ପ୍ରକଟ ହେଲା । ଏହିପରି ପ୍ରକୃତି, ବିଶ୍ୱ ସମ୍ମୁଖରେ ଏକ ଅଦ୍ୱିତୀୟ ପୂର୍ଣ୍ଣ ଦର୍ଶନ ପ୍ରସ୍ତୁତ କଲା ଏବଂ ତାହାର ମାଧ୍ୟମ ହେଲେ ଶ୍ରୀ ଅମ୍ବାଲାଲ୍ ମୂଲ୍‌ଜୀଭାଇ ପଟେଲ, ଯିଏ ଗୁଜରାଟର ଚରୋତର କ୍ଷେତ୍ରର ଭାଦରଣ ଗାଁ'ର ପାଟୀଦାର, କଣ୍ଟ୍ରାକ୍ଟ ବ୍ୟବସାୟ କରିବାବାଲା, ତଥାପି ପୂର୍ଣ୍ଣ ରୂପରେ ବୀତରାଗ ପୁରୁଷ !

'ବ୍ୟାପାରରେ ଧର୍ମ ରହିବା ଉଚିତ, ଧର୍ମରେ ବ୍ୟାପାର ନୁହେଁ', ଏହି ସିଦ୍ଧାନ୍ତ ସହ ସେ ସାରା ଜୀବନ ବିତାଇଲେ । ଜୀବନରେ କେବେ ମଧ୍ୟ ସେ କାହାରିଠାରୁ ପଇସା ନେଇ ନାହାନ୍ତି, ବରଂ ନିଜ ରୋଜଗାରରୁ ଭକ୍ତମାନଙ୍କୁ ଯାତ୍ରା କରାଉଥିଲେ ।

ତାଙ୍କୁ ଯେପରି ପ୍ରାପ୍ତ ହେଲା, ସେହିପରି କେବଳ ଦୁଇ ଘଣ୍ଟାରେ ଅନ୍ୟ ମୁମୁକ୍ଷୁମାନଙ୍କୁ ମଧ୍ୟ ସେ ଆତ୍ମଜ୍ଞାନର ପ୍ରାପ୍ତି କରାଉଥିଲେ, ତାଙ୍କର ଅଦ୍ଭୁତ ସିଦ୍ଧ ହୋଇଥିବା ଜ୍ଞାନ ପ୍ରୟୋଗ ଦ୍ୱାରା । ତାହାକୁ ଅକ୍ରମ ମାର୍ଗ କହିଲେ । ଅକ୍ରମ, ଅର୍ଥାତ ବିନା କ୍ରମରେ ଏବଂ କ୍ରମ ଅର୍ଥାତ ସିଢ଼ି ପରେ ସିଢ଼ି, କ୍ରମାନୁସାରେ ଉପରକୁ ଚଢ଼ିବା । ଅକ୍ରମ ଅର୍ଥାତ ଲିଫ୍ଟ ମାର୍ଗ, ସର୍ଟ କଟ୍ ।

ସେ ନିଜେ ପ୍ରତ୍ୟେକଙ୍କୁ 'ଦାଦା ଭଗବାନ କିଏ ?'ର ରହସ୍ୟ ବତାଇବାକୁ ଯାଇ କହୁଥିଲେ ଯେ, ''ଏ ଯିଏ ଆପଣଙ୍କୁ ଦେଖାଯାଉଛନ୍ତି ସେ ଦାଦା ଭଗବାନ ନୁହଁନ୍ତି, ସେ ତ 'ଏ.ଏମ୍. ପଟେଲ୍' ଅଟେ । ମୁଁ ଜ୍ଞାନୀପୁରୁଷ ଅଟେ ଏବଂ ଭିତରେ ଯିଏ ପ୍ରକଟ ହୋଇଛନ୍ତି, ସେ 'ଦାଦା ଭଗବାନ' ଅଟନ୍ତି । ଦାଦା ଭଗବାନ ତ' ଚଉଦ ଲୋକର ନାଥ ଅଟନ୍ତି । ସେ ଆପଣଙ୍କ ଭିତରେ ମଧ୍ୟ ଅଛନ୍ତି, ସମସ୍ତଙ୍କ ଭିତରେ ଅଛନ୍ତି । ଆପଣଙ୍କ ଭିତରେ ଅବ୍ୟକ୍ତ ରୂପରେ ଅଛନ୍ତି ଏବଂ 'ଏଠାରେ' ମୋ ଭିତରେ ସଂପୂର୍ଣ୍ଣ ରୂପରେ ବ୍ୟକ୍ତ ହୋଇଛନ୍ତି । ଦାଦା ଭଗବାନଙ୍କୁ ମୁଁ ମଧ୍ୟ ନମସ୍କାର କରେ ।''

## ଆତ୍ମଜ୍ଞାନ ପ୍ରାପ୍ତି ପାଇଁ ପ୍ରତ୍ୟକ୍ଷ ଲିଙ୍କ୍

"ମୁଁ ତ କିଛି ଲୋକଙ୍କୁ ନିଜ ହାତରେ ସିଦ୍ଧି ପ୍ରଦାନ କରିବି । ପରେ ଅନୁଗାମୀ ଦରକାର କି ନାହିଁ ? ପରେ ଲୋକଙ୍କୁ ମାର୍ଗ ତ ଦରକାର ନା ?"

**- ଦାଦାଶ୍ରୀ**

ପରମ ପୂଜ୍ୟ ଦାଦାଶ୍ରୀ ଗାଁ'-ଗାଁ', ଦେଶ-ବିଦେଶ ପରିଭ୍ରମଣ କରି ମୁମୁକ୍ଷୁମାନଙ୍କୁ ସତ୍‌ସଙ୍ଗ ଏବଂ ଆତ୍ମଜ୍ଞାନର ପ୍ରାପ୍ତି କରାଉଥିଲେ । ସେ ନିଜର ଜୀବନକାଳ ମଧ୍ୟରେ ପୂଜ୍ୟ ଡା. ନୀରୂବେନ ଅମୀନ(ନୀରୂମାଁ)ଙ୍କୁ ଆତ୍ମଜ୍ଞାନ ପ୍ରାପ୍ତି କରାଇବାର ଜ୍ଞାନସିଦ୍ଧି ପ୍ରଦାନ କରିଥିଲେ । ଦାଦାଶ୍ରୀଙ୍କ ଦେହବିଲୟ ପରେ ନୀରୂମା ସେହିପରି ମୁମୁକ୍ଷୁମାନଙ୍କୁ ସତ୍‌ସଙ୍ଗ ଏବଂ ଆତ୍ମଜ୍ଞାନର ପ୍ରାପ୍ତି, ନିମିତ୍ତ ଭାବରେ କରାଉଥିଲେ । ପୂଜ୍ୟ ଦୀପକଭାଇ ଦେଶାଇଙ୍କୁ ଦାଦାଶ୍ରୀ ସତ୍‌ସଙ୍ଗ କରିବା ପାଇଁ ସିଦ୍ଧି ପ୍ରଦାନ କରିଥିଲେ । ନୀରୂମାଁଙ୍କ ଉପସ୍ଥିତିରେ ହିଁ ତାଙ୍କର ଆଶୀର୍ବାଦ ଦ୍ୱାରା ପୂଜ୍ୟ ଦୀପକଭାଇ ଦେଶ-ବିଦେଶରେ ଅନେକ ଜାଗାକୁ ଯାଇ ମୁମୁକ୍ଷୁମାନଙ୍କୁ ଆତ୍ମଜ୍ଞାନ ପ୍ରାପ୍ତି କରାଉଥିଲେ, ଯାହା ନୀରୂମାଙ୍କ ଦେହବିଲୟ ପରେ ଆଜି ମଧ୍ୟ ଚାଲୁଅଛି । ଏହି ଆତ୍ମଜ୍ଞାନ ପ୍ରାପ୍ତି ପରେ ହଜାର ହଜାର ମୁମୁକ୍ଷୁ ସଂସାରରେ ରହି, ନିଜର ସାଂସାରିକ ଦାୟିତ୍ୱ ବହନ କରି ମଧ୍ୟ ମୁକ୍ତ ରହି ଆତ୍ମରମଣତାର ଅନୁଭବ କରୁଛନ୍ତି ।

ଗ୍ରନ୍ଥରେ ମୁଦ୍ରିତ ବାଣୀ ମୋକ୍ଷାର୍ଥୀମାନଙ୍କୁ ମାର୍ଗଦର୍ଶନ ପାଇଁ ଅତ୍ୟନ୍ତ ଉପଯୋଗୀ ସିଦ୍ଧ ହେବ, କିନ୍ତୁ ମୋକ୍ଷପ୍ରାପ୍ତି ପାଇଁ ଆତ୍ମଜ୍ଞାନ ପ୍ରାପ୍ତ କରିବା ଆବଶ୍ୟକ ଅଟେ । ଅକ୍ରମ ମାର୍ଗ ଦ୍ୱାରା ଆତ୍ମଜ୍ଞାନ ପ୍ରାପ୍ତିର ମାର୍ଗ ଆଜି ମଧ୍ୟ ଖୋଲାଅଛି । ଯେପରି ପ୍ରଜ୍ୱଳିତ ଦୀପ ହିଁ ଅନ୍ୟ ଦୀପକୁ ପ୍ରଜ୍ୱଳିତ କରିପାରେ, ସେହିପରି ପ୍ରତ୍ୟକ୍ଷ ଆତ୍ମଜ୍ଞାନୀଙ୍କଠାରୁ ଆତ୍ମଜ୍ଞାନ ପ୍ରାପ୍ତ କରି ହିଁ ସ୍ୱୟଂର ଆତ୍ମା ଜାଗୃତ ହୋଇପାରେ ।

# ସମ୍ପାଦକୀୟ

ହୃଦୟପୂର୍ବକ ମୋକ୍ଷମାର୍ଗରେ ଅଗ୍ରସର ବ୍ୟକ୍ତିକୁ, କ୍ଷଣେ କ୍ଷଣେ ବିଚଳିତ କରୁଥିବା କଷାୟକୁ ନିଃଶେଷ କରିବା ପାଇଁ, ମାର୍ଗରେ ଆଗକୁ ବଢ଼ିବା ପାଇଁ, କିଛି ଅମୋଘ ସାଧନ ତ ଦରକାର ନା ନାହିଁ ? ସ୍ଥୂଳତମରୁ ସୂକ୍ଷ୍ମତମ ଘର୍ଷଣ କିପରି ଟାଳିବା ? ଆମକୁ  ଅବା ଆମଦ୍ୱାରା ଅନ୍ୟ କାହାକୁ ଦୁଃଖ ହୁଏ ତେବେ ତାହାର ନିବାରଣ କ'ଣ ? କଷାୟର ବୋମାମାଡ଼କୁ ରୋକିବା ପାଇଁ ବା ତାହା ପୁନର୍ବାର ନ ହେଉ, ତାହାର ଉପାୟ କ'ଣ ? ଏତେ ଧର୍ମ କଲେ, ଜପ, ତପ, ବ୍ରତ, ଧ୍ୟାନ ଯୋଗ ଆଦି କଲେ, ତଥାପି ମନ-ବଚନ-କାୟାରୁ ହେଉଥିବା ଦୋଷ କାହିଁକି ବନ୍ଦ ହେଉନି ? ଅନ୍ତରଶାନ୍ତି କାହିଁକି ହେଉନାହିଁ ? କେବେ ଯଦି ନିଜ ଦୋଷ ଦେଖାଯାଏ, ପରେ ତା'ପାଇଁ କ'ଣ କରିବା ? ସେ ସବୁକୁ କିପରି କାଢ଼ିବା ? ମୋକ୍ଷମାର୍ଗରେ ଆଗକୁ ବଢ଼ିବା ପାଇଁ, ଏବଂ ସଂସାର ମାର୍ଗରେ ମଧ୍ୟ ସୁଖ-ଶାନ୍ତି, ମନ୍ଦ କଷାୟ ଏବଂ ପ୍ରେମଭାବରେ ବଞ୍ଚିବା ପାଇଁ କିଛି ଦୃଢ଼ ସାଧନ ତ ଦରକାର ନା ? ବୀତରାଗ ମାନେ ଧର୍ମସାରରେ ଜଗତକୁ କ'ଣ ଶିଖାଇଛନ୍ତି ? ବାସ୍ତବରେ ଧର୍ମଧ୍ୟାନ କେଉଁଟା ? ପାପରୁ ଓଲଟା ଫେରିବାକୁ ଥିବ ତେବେ ତାହାର କିଛି ନିଶ୍ଚିତ ମାର୍ଗ ଅଛି କି ? ଯଦି ଅଛି ତେବେ ନଜର କାହିଁକି ଆସୁନି ?

ଧର୍ମଶାସ୍ତ୍ରରୁ ବହୁତ କିଛି ପଢ଼ାଯାଏ, ତଥାପି ତାହା ଜୀବନରେ ଆଚରଣରେ କାହିଁକି ଆସୁନାହିଁ ? ସାଧୁ, ସନ୍ଥ, ଆଚାର୍ଯ୍ୟ, କଥାକାର ଏତେ ଉପଦେଶ ଦିଅନ୍ତି ତଥାପି କ'ଣ ତ୍ରୁଟି ରହିଯାଉଛି, ତାହାକୁ ଚରିତାର୍ଥ କରିବାରେ ? ପ୍ରତ୍ୟେକ ଧର୍ମରେ, ପ୍ରତ୍ୟେକ ସାଧୁ-ସନ୍ଥଙ୍କ ସଙ୍ଘରେ  କେତେସବୁ କ୍ରିୟା ହୁଏ, କେତେସବୁ ବ୍ରତ, ଜପ, ତପ, ନିୟମ ହେଉଅଛି, ତଥାପି ଫଳଦାୟୀ କାହିଁକି ହେଉନାହିଁ ? କଷାୟ କାହିଁକି କମ ହେଉନାହିଁ ? ଦୋଷର ନିବାରଣ କାହିଁକି ହେଉନାହିଁ ? କ'ଣ ଏହାର ଉତ୍ତରଦାୟିତ୍ୱ ଗାଦି ଉପରେ ବସିଥିବା ଉପଦେଶକ ମାନଙ୍କର ନୁହେଁ ? ଏପରି ଯେଉଁ ଲେଖାଗଲା, ତାହା ଦ୍ୱେଷ ଅବା ବୈରଭାବରୁ ନୁହେଁ କିନ୍ତୁ କରୁଣାଭାବ ସହ, ତଥାପି ତାହାକୁ ଧୋଇବା ପାଇଁ କିଛି ଉପାୟ ଅଛି ନା ନାହିଁ ? ଅଜ୍ଞାନ ଦଶାରୁ ଜ୍ଞାନ ଦଶା ଏବଂ ଅନ୍ତତଃ କେବଳଜ୍ଞାନ ସ୍ୱରୂପ ଦଶା ପର୍ଯ୍ୟନ୍ତ ପହଞ୍ଚିବା ପାଇଁ ଜ୍ଞାନୀମାନେ, ତୀର୍ଥଙ୍କରମାନେ କ'ଣ ନିର୍ଦ୍ଦେଶ ଦେଇଥିବେ ? ଋଣାନୁବନ୍ଧବାଲା ବ୍ୟକ୍ତିମାନଙ୍କ ସହ ରାଗ୍ ଅବା ଦ୍ୱେଷର ବନ୍ଧନରୁ ମୁକ୍ତ ହୋଇ ବୀତରାଗତା କିପରି ପ୍ରାପ୍ତ ହେବ ?

'ମୋକ୍ଷର ମାର୍ଗ ଅଟେ ବୀରର, ନୁହେଁ କାପୁରୁଷର କାମ' କିନ୍ତୁ ବୀରତା କେଉଁଠି ଦେଖାଇବା ଯାଦ୍ୱାରା ଜଲଦି ମୋକ୍ଷରେ ପହଞ୍ଚିବା? କାପୁରୁଷତା କାହାକୁ କହିବା? ପାପୀ ପୁଣ୍ୟଶାଳୀ ହୋଇପାରିବେ? ତାହା କିପରି?

ପୁରା ଜୀବନ ଜଳିଗଲା ଏହି R.D.X.ର ଜ୍ୱାଳାରେ, ତାହାକୁ ଲିଭେଇବା କିପରି? ରାତି-ଦିନ ପତ୍ନୀର ପ୍ରଭାବ, ପୁତ୍ର-ପୁତ୍ରୀଙ୍କ ତାପ ଏବଂ ଟଙ୍କା କମାଇବାର ଉତ୍ପାତ, ଏହି ସବୁ ତାପରୁ କିପରି *ଶାତା* (ସୁଖ ପରିଣାମ) ପ୍ରାପ୍ତକରି ନାଆ କୂଳରେ ପହଞ୍ଚାଇବା?

ଗୁରୁ-ଶିଷ୍ୟଙ୍କ ମଧ୍ୟରେ, ଗୁରୁମାତା ଏବଂ ଶିଷ୍ୟାଙ୍କ ମଧ୍ୟରେ, ନିରନ୍ତର କଷାୟର ଚକ୍କର୍‌ରେ ପଡ଼ିଥିବା ଉପଦେଶକ ସେଥିରୁ କିପରି ବାହାରି ପାରିବେ? *ଅଣହକ୍କ* ର ଲକ୍ଷ୍ମୀ ଏବଂ *ଅଣହକ୍କ* ର ସ୍ତ୍ରୀଙ୍କ ପଛରେ ମନ-ବାଣୀ-ବ୍ୟବହାର ଅବା ଦୃଷ୍ଟିଦ୍ୱାରା ଦୋଷ ହୋଇଯାଏ ତେବେ ତାହାର ତିର୍ଯ୍ୟଁଚ ଅଥବା ନର୍କଗତି ବ୍ୟତୀତ କେଉଁଠି ସ୍ଥାନ ହୋଇପାରେ? ସେ ସବୁରୁ କିପରି ମୁକ୍ତ ହେବା? ସେଥିରେ ସଚେତ ରହିବାକୁ ଥିବ ତେବେ କିପରି ରହିପାରିବା ଏବଂ କିପରି ମୁକ୍ତ ହୋଇପାରିବା? ଏପରି ଅନେକ ସମସ୍ୟାଭରା ସନାତନ ପ୍ରଶ୍ନର ସମାଧାନ କ'ଣ ହୋଇପାରେ?

ପ୍ରତ୍ୟେକ ମନୁଷ୍ୟ ନିଜ ଜୀବନକାଳ ମଧ୍ୟରେ ସଂଯୋଗର ବଶବର୍ତ୍ତୀ ହୋଇ କେବେ କେବେ ଏଭଳି ପରିସ୍ଥିତିରେ ଫଶିଯାଏ ଯେ ଭୁଲ କରିବାର ନଥିବ, ତଥାପି ସଂସାର ବ୍ୟବହାରରେ ଭୁଲରୁ ମୁକ୍ତ ହୋଇପାରେ ନାହିଁ, ଏଭଳି ପରିସ୍ଥିତିରେ ସଚ୍ଚା ହୃଦୟବାଲା ମଣିଷ ସବୁବେଳେ ଦ୍ୱନ୍ଦରେ ରୁହନ୍ତି ଯେ ଦୋଷରୁ ମୁକୁଳିବାର ଏବଂ ଜୀବନ ଜୀଇଁବାର ସଚ୍ଚାମାର୍ଗ ମିଳିଯାଉ, ଯାଦ୍ୱାରା ସେମାନେ ନିଜର ଆନ୍ତରିକ ସୁଖ-ଶାନ୍ତିରେ ରହି ପ୍ରଗତି କରିପାରିବେ। ତାହାପାଇଁ ତୀର୍ଥଙ୍କର ମାନେ ଏବଂ ଜ୍ଞାନୀମାନେ, କେବେ ବି ପ୍ରାପ୍ତ ହୋଇନଥିବା ଏପରି ଅଧ୍ୟାତ୍ମ ବିଜ୍ଞାନର ଏକମାତ୍ର ନିଶ୍ଚିତ ଆଲୋଚନା-ପ୍ରତିକ୍ରମଣ-ପ୍ରତ୍ୟାଖ୍ୟାନ ରୂପୀ ହତିଆର ଜଗତକୁ ଅର୍ପଣ କରିଛନ୍ତି। ଏହି ହତିଆର ଦ୍ୱାରା ବିକଶିତ ଦୋଷରୂପୀ ବିଶାଳ ବୃକ୍ଷକୁ ମୁଖ୍ୟ ଜଡ଼ ସହିତ ନିର୍ମୂଳ କରି ଅନନ୍ତ ଜୀବ ମୋକ୍ଷଲକ୍ଷ୍ମୀକୁ ପ୍ରାପ୍ତ କରିପାରିଛନ୍ତି। ଏଭଳି ମୁକ୍ତି ପାଇଁ ଏହି ପ୍ରତିକ୍ରମଣ ରୂପୀ ବିଜ୍ଞାନର ରହସ୍ୟ ଯଥାର୍ଥ ରୂପରେ ଯେମିତିକୁ ସେମିତି(as it is) ପ୍ରକଟ ଜ୍ଞାନୀପୁରୁଷ ଶ୍ରୀ ଦାଦା ଭଗବାନ କେବଳଜ୍ଞାନ ସ୍ୱରୂପରେ ଦେଖି ପ୍ରକଟ ବାଣୀ ଦ୍ୱାରା ଦେଇଛନ୍ତି। ସେ ସମସ୍ତ ପ୍ରସ୍ତୁତ ଗ୍ରନ୍ଥରେ ସଙ୍କଳିତ ହୋଇଛି, ଯାହା ବିଜ୍ଞ ପାଠକଙ୍କ ଆତ୍ୟନ୍ତିକ କଲ୍ୟାଣ ନିମନ୍ତେ ଉପଯୋଗୀ ସିଦ୍ଧ ହେବ।

ଜ୍ଞାନୀପୁରୁଷଙ୍କ ବାଣୀ ଦ୍ରବ୍ୟ-କ୍ଷେତ୍ର-କାଳ-ଭାବ ତଥା ଭିନ୍ନ ଭିନ୍ନ ନିମିତ୍ତ ଅଧୀନରେ ବାହାରିଛି, ସେହିବାଣୀର ସଙ୍କଳନରେ ଭାସିତ ତ୍ରୁଟିକୁ କ୍ଷମ୍ୟ ମଣି ଜ୍ଞାନୀପୁରୁଷଙ୍କ ବାଣୀର ଅନ୍ତର ଆଶୟ ପ୍ରାପ୍ତ କରନ୍ତୁ, ଏହି ଅଭ୍ୟର୍ଥନା!

ଜ୍ଞାନୀପୁରୁଷଙ୍କ ଯେଉଁ ବାଣୀ ବାହାରିଛି, ତାହା ନୈମିତ୍ତିକ ରୂପରେ ଯେଉଁ ମୁମୁକ୍ଷୁ-ମହାତ୍ମା ସାମ୍ନାକୁ ଆସିଲେ, ତାଙ୍କରି ସମାଧାନ ପାଇଁ ବାହାରିଥାଏ ଏବଂ ସେ ବାଣୀ ଯେବେ ଗ୍ରନ୍ଥରୂପରେ ସଙ୍କଳିତ ହୁଏ, ତେବେ କେବେ କିଛି ବିରୋଧାଭାସ ଭାସିତ ହୋଇପାରେ । ଯେପରିକି ଜଣେ ପ୍ରଶ୍ନକର୍ତ୍ତାର ଆନ୍ତରିକ ସ୍ଥିତିର ସମାଧାନ ପାଇଁ ଜ୍ଞାନୀପୁରୁଷ ଦ୍ୱାରା 'ପ୍ରତିକ୍ରମଣ ଜାଗୃତି ଅଟେ ଏବଂ ଅତିକ୍ରମଣ ଡିସ୍‌ଚାର୍ଜ ଅଟେ' ଏଭଳି ପ୍ରତ୍ୟୁତ୍ତର ପ୍ରାପ୍ତ ହୁଏ ଏବଂ ଅନ୍ୟ ସୂକ୍ଷ୍ମ ଜାଗୃତି ପର୍ଯ୍ୟନ୍ତ ପହଞ୍ଚିଥିବା ମହାତ୍ମାଙ୍କୁ ସୂକ୍ଷ୍ମତାର ସହ ବୁଝାଇବା ପାଇଁ ଜ୍ଞାନୀପୁରୁଷ ଏପରି ଖୁଲାସା କରନ୍ତି ଯେ 'ଅତିକ୍ରମଣ ଡିସ୍‌ଚାର୍ଜ ଅଟେ ଏବଂ ପ୍ରତିକ୍ରମଣ ମଧ୍ୟ ଡିସ୍‌ଚାର୍ଜ ଅଟେ, ଡିସ୍‌ଚାର୍ଜକୁ ଡିସ୍‌ଚାର୍ଜରେ ଡିଭାଇଡ଼(ଭାଗ) କରିବାର ଅଛି ।' ତେବେ ଉଭୟ ଖୁଲାସା ନୈମିତ୍ତିକ ରୂପରେ ଯଥାର୍ଥ ହିଁ ଅଟେ । କିନ୍ତୁ ସାପେକ୍ଷରୂପେ ବିରୋଧାଭାସୀ ଲାଗନ୍ତି । ଏହିପରି ପ୍ରଶ୍ନକର୍ତ୍ତାଙ୍କ ଦଶା(ସ୍ଥିତି)ରେ ଫରକ ହେବା କାରଣରୁ ପ୍ରତ୍ୟୁତ୍ତରରେ ବିରୋଧାଭାସ ନଜର ଆସେ, ତଥାପି ସିଦ୍ଧାନ୍ତିକ ରୂପରେ ଦେଖାଯିବ ତେବେ ସେଥିରେ ବିରୋଧାଭାସ ହିଁ ନାହିଁ । ବିଜ୍ଞ ପାଠକଙ୍କୁ ଜ୍ଞାନବାଣୀର ସୂକ୍ଷ୍ମତା ଆତ୍ମସାତ କରି କଥା ବୁଝାପଡୁ ସେଥିପାଇଁ ସାହଜିକ ରୂପରେ ଏହା ସୂଚିତ କରାଯାଇଛି ।

**- ଜୟ ସଚ୍ଚିଦାନନ୍ଦ**

**ଡା. ନୀରୂବେନ ଅମୀନ**

# ସୂଚିପୃଷ୍ଠ

# ପ୍ରତିକ୍ରମଣ

## ୧. ପ୍ରତିକ୍ରମଣର ଯଥାର୍ଥ ସ୍ୱରୂପ

**ପ୍ରଶ୍ନକର୍ତ୍ତା :** ମନୁଷ୍ୟକୁ ଏହି ଜନ୍ମରେ ମୁଖ୍ୟ ରୂପରେ କ'ଣ କରିବା ଉଚିତ ?

**ଦାଦାଶ୍ରୀ :** ମନରେ ଯେପରି ଥିବ, ବାଣୀରେ ଠିକ ସେହିପରି କହିବା ଉଚିତ ଏବଂ ସେହିପରି ବ୍ୟବହାରରେ କରିବା ଉଚିତ । ଆମକୁ ବାଣୀରେ କିଛି କହିବାକୁ ଥିବ କିନ୍ତୁ ମନ ଯଦି ବିଗିଡ଼ି ଯାଏ ତେବେ ତାହାପାଇଁ ପ୍ରତିକ୍ରମଣ କରିବାର ଅଛି ଏବଂ ପ୍ରତିକ୍ରମଣ କାହାର କରିବାର ଅଛି ? କାହା ସାକ୍ଷୀରେ କରିବ ? ତେବେ କୁହେ, 'ଦାଦା ଭଗବାନ'ଙ୍କ ସାକ୍ଷୀରେ ପ୍ରତିକ୍ରମଣ କର । ଏ ଯିଏ ଦେଖା ଯାଉଛନ୍ତି, ସେ 'ଦାଦା ଭଗବାନ' ନୁହଁନ୍ତି । ଇଏ ତ ଭାଦରଣର ପଟେଲ ଅଟନ୍ତି, ଏ.ଏମ୍.ପଟେଲ ଅଟନ୍ତି । 'ଦାଦା ଭଗବାନ' ଭିତରେ ଚଉଦ ଲୋକର ନାଥ ପ୍ରକଟ ହୋଇ ଯାଇଛନ୍ତି, ଏଣୁ ତାଙ୍କ ନାମରେ ପ୍ରତିକ୍ରମଣ କର ଯେ, 'ହେ ଦାଦା ଭଗବାନ ! ମୋ ମନ ବିଗିଡ଼ିଗଲା, ସେଥିପାଇଁ କ୍ଷମା ମାଗୁଛି । ମୋତେ କ୍ଷମା କରନ୍ତୁ ।' ମୁଁ ବି ତାଙ୍କ ନାମ ନେଇ ପ୍ରତିକ୍ରମଣ କରେ ।

ଭଲ କର୍ମ କରିବ ତେବେ ଧର୍ମ କୁହାଯାଏ ଏବଂ ଖରାପ କର୍ମ କରିବ ତେବେ ଅଧର୍ମ କୁହାଯାଏ ଆଉ ଧର୍ମ-ଅଧର୍ମରୁ ଆଗକୁ ଯିବା, ତାହା ଆତ୍ମଧର୍ମ କୁହାଯାଏ । ଭଲ କର୍ମ କରିବ ତେବେ କ୍ରେଡ଼ିଟ୍ ଉତ୍ପନ୍ନ ହୁଏ ଏବଂ ସେ କ୍ରେଡ଼ିଟ୍ ଭୋଗିବା ପାଇଁ ଯିବାକୁ ପଡ଼େ । ଖରାପ କର୍ମ କରିବ ତେବେ ଡେବିଟ୍ ଉତ୍ପନ୍ନ ହୁଏ ଏବଂ ସେ ଡେବିଟ୍ ଭୋଗିବା ପାଇଁ ଯିବାକୁ ପଡ଼େ । ଆଉ ଯେଉଁଠି ଖାତାରେ କ୍ରେଡ଼ିଟ୍-ଡେବିଟ୍ ନାହିଁ, ସେଠି ଆତ୍ମା ପ୍ରାପ୍ତ ହୁଏ ।

**ପ୍ରଶ୍ନକର୍ତ୍ତା :** ଏହି ସଂସାରକୁ ଆସିଛୁ, ଏଣୁ କର୍ମ ତ କରିବାକୁ ପଡ଼ିବ ନା ? ଜାଣତ-ଅଜାଣତରେ ଯଦି ଖରାପ କର୍ମ ହୋଇଯାଏ ତେବେ କ'ଣ କରିବୁ ?

**ଦାଦାଶ୍ରୀ :** ହୋଇଯାଏ ତେବେ ତାହାର ଉପାୟ ଥିବ ନା ପୁଣି ! ଯେବେ କେବେ ବି ଖରାପ କର୍ମ ହୋଇଯାଏ ତେବେ ତୁରନ୍ତ ତା'ପରେ ପଶ୍ଚାତାପ ହୁଏ ଏବଂ ହୃଦୟର ସହିତ, ସିନ୍ସିୟରିଟୀର ସହ ପଶ୍ଚାତାପ କରିବା ଉଚିତ । ପଶ୍ଚାତାପ କରିବା

ସତ୍ତ୍ୱେ ମଧ୍ୟ ପୁଣି ଯଦି ସେହିପରି ହୋଇଯାଏ ତେବେ ତାହାର ଚିନ୍ତା କରିବାର ନାହିଁ। ପୁଣି ପଶ୍ଚାତାପ କରିବା ଉଚିତ। ଏହା ପଛରେ କି ବିଜ୍ଞାନ ଅଛି, ତାହା ତୁମକୁ ବୁଝାପଡ଼େ ନାହିଁ ସେଥିପାଇଁ ତୁମକୁ ଏପରି ଲାଗେ ଯେ ପଶ୍ଚାତାପ କରିବା ଦ୍ୱାରା ଏହା ବନ୍ଦ ହେଉନାହିଁ। କାହିଁକି ବନ୍ଦ ହେଉନାହିଁ, ତାହା ବିଜ୍ଞାନ ଅଟେ। ଏଣୁ ତୁମକୁ ପଶ୍ଚାତାପ ହିଁ କରିଚାଲିବାର ଅଛି। ଯିଏ ହୃଦୟର ସହିତ ପଶ୍ଚାତାପ କରେ ତା'ର ସବୁକର୍ମ ଧୋଇଯାଏ। କାହାକୁ ଖରାପ ଲାଗିଲା ଅର୍ଥାତ ତାହାର ପଶ୍ଚାତାପ ନିଶ୍ଚିତ କରିବା ଉଚିତ।

**ପ୍ରଶ୍ନକର୍ତ୍ତା :** ଏହି ଶରୀରର ଧର୍ମ ପାଳୁଅଛୁ ତେବେ କ'ଣ ତାହାର ପ୍ରାୟଶ୍ଚିତ କରିବାକୁ ପଡ଼ିବ ?

**ଦାଦାଶ୍ରୀ :** ଅବଶ୍ୟ! ଯେପର୍ଯ୍ୟନ୍ତ 'ମୁଁ ଆତ୍ମା ଅଟେ' ଏପରି ଭାନ୍(ହୋସ୍,ଚେତନା) ହୋଇନାହିଁ, ସେପର୍ଯ୍ୟନ୍ତ ଯଦି ପ୍ରାୟଶ୍ଚିତ ନ ହେବ ତେବେ କର୍ମ ଅଧିକ ବାନ୍ଧିହେବ। ପ୍ରାୟଶ୍ଚିତ କରିବାଦ୍ୱାରା କର୍ମର ଗଣ୍ଠି ହାଲୁକା ହୋଇଯାଏ। ନହେଲେ ସେ ପାପର ଫଳ ବହୁତ ଖରାପ ଆସେ। ମନୁଷ୍ୟଜନ୍ମ ବି ଚାଲିଯାଏ, ଆଉ ଯଦି ମନୁଷ୍ୟ ଜନ୍ମ ମିଳେ ତେବେ ତା'କୁ ସବୁ ପ୍ରକାରର ଅସୁବିଧା ଆସେ। ଖାଇବାର, ପିଇବାର, ମାନ-ସମ୍ମାନ ତ କେବେ ଦେଖାଦିଏ ହିଁ ନାହିଁ, ସର୍ବଦା ଅପମାନ। ସେଥିପାଇଁ ଏ ପ୍ରାୟଶ୍ଚିତ ଅବା ଅଲଗା ସବୁ କ୍ରିୟା କରିବାକୁ ପଡ଼େ। ଏହାକୁ ପରୋକ୍ଷ ଭକ୍ତି କୁହାଯାଏ। ଯେପର୍ଯ୍ୟନ୍ତ ଆତ୍ମଜ୍ଞାନ ନ ହୋଇଛି, ସେପର୍ଯ୍ୟନ୍ତ ପରୋକ୍ଷ ଭକ୍ତି କରିବାର ଆବଶ୍ୟକତା ଅଛି।

ଏବେ ପଶ୍ଚାତାପ କାହା ପାଖରେ କରିବା ଉଚିତ ? କାହା ସାକ୍ଷୀରେ କରିବା ଉଚିତ ? ଯାହାଙ୍କୁ ତୁମେ ମାନୁଥିବ। କୃଷ୍ଣ ଭଗବାନଙ୍କୁ ମାନୁଛ ଅବା ଦାଦା ଭଗବାନଙ୍କୁ ମାନୁଛ, ଯାହାଙ୍କୁ ବି ମାନ, ତାଙ୍କ ସାକ୍ଷୀରେ କରିବା ଉଚିତ। ନହେଲେ ଉପାୟ ନଥିବ, ଏପରି ତ ଏହି ଦୁନିଆରେ ହୁଏ ହିଁ ନାହିଁ। ପ୍ରଥମେ ଉପାୟ ଜନ୍ମ ନିଏ, ତା'ପରେ ରୋଗ ଉତ୍ପନ୍ନ ହୁଏ।

ଏ ସଂସାର ସୃଷ୍ଟି ହେଲା କିପରି ? ଅତିକ୍ରମଣରୁ। କ୍ରମଣରେ କିଛି ଅସୁବିଧା ନାହିଁ। ତୁମେ ହୋଟେଲରେ କୌଣସି ଜିନିଷ ମଗାଇ ଖାଇଲ ଏବଂ ଦୁଇଟି ପ୍ଲେଟ ତୁମ ହାତରୁ ଭାଙ୍ଗିଗଲା, ପରେ ତାହାର ପଇସା ଦେଇ ବାହାରକୁ ବାହାରିଲ, ତେବେ ତୁମେ ଅତିକ୍ରମଣ କଲ ନାହିଁ। ତେବେ ପୁଣି ତାହାର ପ୍ରତିକ୍ରମଣ କରିବାକୁ ପଡ଼ିବ ନାହିଁ। କିନ୍ତୁ ପ୍ଲେଟ ଭାଙ୍ଗେ ଏବଂ ତୁମେ କୁହ ଯେ, ତୋ ଲୋକ ଭାଙ୍ଗିଛନ୍ତି, ତେବେ

ପୁଣି କଥା ଆଗକୁ ବଢ଼ିଲା । ଅତିକ୍ରମଣ କଲ, ତାହାର ପ୍ରତିକ୍ରମଣ କରିବାକୁ ପଡ଼ିବ । ଆଉ ଅତିକ୍ରମଣ ହେବା ବିନା ରହେ ନାହିଁ, ଏଣୁ ପ୍ରତିକ୍ରମଣ କର । ବାକି ସବୁ କ୍ରମଣ ତ ଅଛି । ସହଜ ରୂପେ କଥା ହେଲା, ତାହା କ୍ରମଣ ଅଟେ । ସେଥିରେ ଅସୁବିଧା ନାହିଁ, କିନ୍ତୁ ଅତିକ୍ରମଣ ନ ହୋଇ ରହେ ନାହିଁ । ଏଣୁ ତାହାର ପ୍ରତିକ୍ରମଣ କର ।

**ପ୍ରଶ୍ନକର୍ତ୍ତା :** ଏ ଅତିକ୍ରମଣ ହେଲା, ତାହା ନିଜକୁ କିପରି ଜଣାପଡ଼ିବ ?

**ଦାଦାଶ୍ରୀ :** ତାହା ନିଜକୁ ବି ଜଣାପଡ଼େ ଏବଂ ସାମ୍ନାବାଲାକୁ ବି ଜଣା ପଡ଼େ । ତୁମକୁ ବି ଜଣାପଡ଼ିବ ଯେ ତା' ଚେହେରାରେ ପ୍ରଭାବ ପଡ଼ିଲା (ଶୁଖିଗଲା) ଏବଂ ତୁମ ଉପରେ ବି ପ୍ରଭାବ ପଡ଼େ । ଉଭୟଙ୍କ ଉପରେ ପ୍ରଭାବ ପଡ଼େ । ଏଣୁ ତାହାର ପ୍ରତିକ୍ରମଣ କରିବାର ହିଁ ଅଛି ।

ଅତିକ୍ରମଣ ତ, କ୍ରୋଧ-ମାନ-ମାୟା-ଲୋଭ, ଏ ସବୁକୁ ଅତିକ୍ରମଣ କୁହାଯାଏ । ଏମାନଙ୍କର ପ୍ରତିକ୍ରମଣ କଲ ମାନେ କ୍ରୋଧ-ମାନ-ମାୟା-ଲୋଭ ଗଲେ । ଅତିକ୍ରମଣ ହେଲା ଏବଂ ପ୍ରତିକ୍ରମଣ କଲ, ତେବେ କ୍ରୋଧ-ମାନ-ମାୟା-ଲୋଭ ଗଲେ । ଏହି ସଂସାର ଅତିକ୍ରମଣରୁ ସୃଷ୍ଟି ହୋଇଛି ଏବଂ ପ୍ରତିକ୍ରମଣ ଦ୍ୱାରା ନାଶ ହେବ ।

**ପ୍ରଶ୍ନକର୍ତ୍ତା :** ତେବେ ପ୍ରତିକ୍ରମଣ ମାନେ କ'ଣ ?

**ଦାଦାଶ୍ରୀ :** ପ୍ରତିକ୍ରମଣ ଅର୍ଥାତ ସାମ୍ନାବାଲା ଆମର ଯେଉଁ ଅପମାନ କରେ ତେବେ ଆମକୁ ବୁଝିଯିବା ଉଚିତ ଯେ ଏହି ଅପମାନର ଦୋଷୀ କିଏ ? ସେ କରିବାବାଲା ଦୋଷୀ ନା ଭୋଗିବାବାଲା ଦୋଷୀ, ପ୍ରଥମେ ଆମକୁ ଏହି ଡିସିସନ୍(ନିଷ୍ପତି) ନେବା ଉଚିତ । ସେ ଅପମାନ କରିବାବାଲା ବିଲକୁଲ ବି ଦୋଷୀ ହୋଇନଥାଏ । ଏକ ପରସେଣ୍ଟ ବି ଦୋଷୀ ହୋଇନଥାଏ । ସେ ନିମିତ୍ତ ଅଟେ ଏବଂ ନିଜର ହିଁ କର୍ମର ଉଦୟ କାରଣରୁ ସେ ନିମିତ୍ତ ମିଳେ । ଅର୍ଥାତ ଏହା ନିଜର ହିଁ ଦୋଷ । ଏବେ ପ୍ରତିକ୍ରମଣ ଏଥିପାଇଁ କରିବାର ଅଛି ଯେ ସାମ୍ନାବାଲା ଉପରେ ଯଦି ଖରାପ ଭାବ ହୋଇଥିବ ତେବେ ପ୍ରତିକ୍ରମଣ କରିବା ଉଚିତ । ତା' ପାଇଁ ଯଦି ମନରେ ଏପରି ବିଚାର ଆସିଯାଇଥିବ ଯେ ଅଯୋଗ୍ୟ ଅଟେ, ବଦମାଶ ଅଟେ, ତେବେ ପ୍ରତିକ୍ରମଣ କରିବା ଉଚିତ । ଆଉ ଏପରି ବିଚାର ଆସିନଥିବ ଏବଂ ଆମେ ତା'ର ଉପକାର ମାନିଥିବା ତେବେ ପ୍ରତିକ୍ରମଣ କରିବାର ଆବଶ୍ୟକତା ନାହିଁ । ନହେଲେ କେହିବି ଗାଳି ଦିଏ ତେବେ ତାହା ନିଜର ହିଁ ହିସାବ, ସେ ବ୍ୟକ୍ତି ତ ନିମିତ୍ତ ଅଟେ । ପକେଟମାର୍ ହୁଏ ତେବେ ମାରିବାବାଲା ନିମିତ୍ତ ଅଟେ ଏବଂ ହିସାବ ନିଜର ହିଁ ଅଟେ । ଏମାନେ ତ ନିମିତ୍ତକୁ ହିଁ କାମୁଡ଼ନ୍ତି ଏବଂ ସେଥିପାଇଁ ଏସବୁ ଝଗଡ଼ା ସୃଷ୍ଟି ହୋଇଛି ।

ଓଲଟା ଚାଲିବା, ତାହାର ନାମ ଅତିକ୍ରମଣ ଏବଂ ଫେରିଆସିବା, ତାହାର ନାମ ପ୍ରତିକ୍ରମଣ।

ଯେଉଁଠି ଝଗଡ଼ା ଅଛି, ସେଠି ପ୍ରତିକ୍ରମଣ ନାହିଁ ଏବଂ ଯେଉଁଠି ପ୍ରତିକ୍ରମଣ ଅଛି, ସେଠି ଝଗଡ଼ା ନାହିଁ।

ପୁଅକୁ ପିଟିବାର କୌଣସି ଅଧିକାର ନାହିଁ, ବୁଝାଇବାର ଅଧିକାର ଅଛି। ତଥାପି ଯଦି ପୁଅକୁ ପିଟିଦେଲେ ଏବଂ ପ୍ରତିକ୍ରମଣ କଲେ ନାହିଁ ତେବେ କର୍ମସବୁ ଲାଖି ଚାଲିବେ ନା? ପ୍ରତିକ୍ରମଣ ତ ହେବା ଉଚିତ ନା?

'ମୁଁ ଚନ୍ଦୁଭାଇ', ଏହା ହିଁ ଅତିକ୍ରମଣ। ତଥାପି ବ୍ୟବହାରରେ ଏହାକୁ ଲେଟ୍ ଗୋ କରିବ। କିନ୍ତୁ କ'ଣ କାହାକୁ ଦୁଃଖ ହେଉଛି ତୁମଦ୍ୱାରା? ହେଉନାହିଁ, ତେବେ ଅତିକ୍ରମଣ ହୋଇନାହିଁ। ସାରାଦିନରେ ନିଜଦ୍ୱାରା କାହାକୁ ଦୁଃଖ ହୋଇଯାଏ, ତେବେ ତାହା ଅତିକ୍ରମଣ ଅଟେ। ତାହାର ପ୍ରତିକ୍ରମଣ କର। ଏହା ବୀତରାଗମାନଙ୍କ ସାଇନ୍ସ ଅଟେ। ଅତିକ୍ରମଣ ଅଧୋଗତିରେ ନେଇଯିବ ଏବଂ ପ୍ରତିକ୍ରମଣ ଉର୍ଦ୍ଧ୍ୱଗତିରେ ନେଇଯିବ ଏବଂ ପୁରା ମୋକ୍ଷ ଯିବା ପର୍ଯ୍ୟନ୍ତ ପ୍ରତିକ୍ରମଣ ହିଁ ହେଲ୍ପ କରିବ।

ପ୍ରତିକ୍ରମଣ କାହାକୁ କରିବାକୁ ପଡ଼େ ନାହିଁ? ତା'କୁ, ଯିଏ ଅତିକ୍ରମଣ କରିନାହିଁ।

**ପ୍ରଶ୍ନକର୍ତ୍ତା :** ବ୍ୟବହାର, ବ୍ୟାପାର ଏବଂ ଅନ୍ୟ ପ୍ରବୃତ୍ତିରେ ଅନ୍ୟାୟ ହେଉଅଛି ଏପରି ଲାଗିବା ଯୋଗୁଁ ମନରେ ଯଦି ଗ୍ଲାନି ହୁଏ, ତାହାଦ୍ୱାରା ଯଦି ବ୍ୟବହାର ବିଗିଡ଼ିବାକୁ ଲାଗେ ତେବେ ତାହାପାଇଁ କ'ଣ କରିବୁ? ଆମଦ୍ୱାରା ଯଦି ଏପରି କିଛି ଅନ୍ୟାୟ ହେଉଥିବ ତେବେ ତାହାର ପ୍ରାୟଶ୍ଚିତ କ'ଣ?

**ଦାଦାଶ୍ରୀ :** ପ୍ରାୟଶ୍ଚିତରେ ଆଲୋଚନା-ପ୍ରତିକ୍ରମଣ-ପ୍ରତ୍ୟାଖ୍ୟାନ ହେବା ଉଚିତ। ଯେଉଁଠି-ଯେଉଁଠି ଯାହା ସହିତ ବି ଅନ୍ୟାୟ କରିଥିବ, ସେଠି ଆଲୋଚନା-ପ୍ରତିକ୍ରମଣ ହେବା ଉଚିତ ଏବଂ ଆଉ ପୁନର୍ବାର ଅନ୍ୟାୟ କରିବି ନାହିଁ ଏପରି ନିଶ୍ଚୟ କରିବା ଉଚିତ। ଯେଉଁ ଭଗବାନଙ୍କୁ ମାନୁଥିବ, କେଉଁ ଭଗବାନଙ୍କୁ ମାନୁଛ?

**ପ୍ରଶ୍ନକର୍ତ୍ତା :** ଶିବ ଭଗବାନଙ୍କୁ।

**ଦାଦାଶ୍ରୀ :** ହଁ, ତେବେ ସେହି ଶିବ ଭଗବାନଙ୍କ ପାଖରେ, ସେଠି ପଶ୍ଚାତାପ କରିବା ଉଚିତ। ଆଲୋଚନା କରିବା ଉଚିତ ଯେ ମୋଦ୍ୱାରା ଏହି ଲୋକଙ୍କ ସହିତ ଏପରି ଭୁଲ ହୋଇଛି, ଏପରି ଏବେ ଆଉ କରିବି ନାହିଁ। ଆମକୁ ବାରମ୍ବାର ପଶ୍ଚାତାପ

କରିବା ଉଚିତ । ଏବଂ ପୁଣି ଯଦି ଏପରି ଦୋଷ ହୋଇଯାଏ ତେବେ ପୁଣି ପଶ୍ଚାତାପ କରିବା ଉଚିତ । ଏପରି କରୁ-କରୁ ଦୋଷ କମ୍ ହୋଇଯିବ । ତୁମକୁ କରିବାକୁ ନଥିବ ତଥାପି ଅନ୍ୟାୟ ହୋଇଯିବ । ଯାହା ହୋଇଯାଉଛି, ତାହା ଏବେ ପ୍ରକୃତିଦୋଷ ଅଟେ । ଏହି ପ୍ରକୃତିଦୋଷ ତାହା ତୁମର ପୂର୍ବଜନ୍ମର ଦୋଷ ଅଟେ, ତାହା ଆଜିର ଦୋଷ ନୁହେଁ । ଆଜି ତୁମକୁ ସୁଧୁରିବାର ଅଛି, କିନ୍ତୁ ଏ ଯାହା ହୋଇଯାଉଛି ତାହା ତୁମର ପୂର୍ବର ଦୋଷ । ତାହା ତୁମକୁ ହଇରାଣ ନକରି ରହିବ ନାହିଁ । ସେଥିପାଇଁ ଆଲୋଚନା-ପ୍ରତିକ୍ରମଣ-ପ୍ରତ୍ୟାଖ୍ୟାନ ବାରମ୍ବାର କରିବାକୁ ପଡ଼ିବ ।

**ପ୍ରଶ୍ନକର୍ତ୍ତା :** ଆମକୁ ସହନ କରିବାକୁ ପଡୁଛି, ତେବେ ତାହାର ରାସ୍ତା କ'ଣ ?

**ଦାଦାଶ୍ରୀ :** ଆମକୁ ତ ସହନ କରିନେବା ହିଁ ଉଚିତ, ବ୍ୟର୍ଥ ହୋ-ହାଲ୍ଲା କରିବା ଉଚିତ ନୁହେଁ । ସହନ କରିବା ଏବଂ ତାହା ପୁଣି ସମତାପୂର୍ବକ କରିବା ଉଚିତ । ସାମ୍ନାବାଲାକୁ ମନରେ ଗାଳିଦେଇ ନୁହେଁ, କିନ୍ତୁ ସମତାପୂର୍ବକ ଯେ ଭାଇ, ତୁ ମୋତେ କର୍ମରୁ ମୁକ୍ତ କଲୁ । ମୋର ଯେଉଁ କର୍ମ ଥିଲା, ତାହା ମୋତେ ଭୋଗାଇଲୁ ଏବଂ ମୋତେ ମୁକ୍ତ କଲୁ । ଏଣୁ ତା'ର ଉପକାର ମାନିବା ଉଚିତ । ମାଗଣାରେ କିଛି ସହିବାକୁ ପଡ଼େ ନାହିଁ, ତାହା ନିଜର ହିଁ ଦୋଷର ପରିଣାମ ଅଟେ ।

**ପ୍ରଶ୍ନକର୍ତ୍ତା :** ଏବଂ ପ୍ରତିକ୍ରମଣ ତ, ଅନ୍ୟର ଦୋଷ ଦେଖାଗଲା, ତାହାର ପ୍ରତିକ୍ରମଣ କରିବାର ଅଛି ?

**ଦାଦାଶ୍ରୀ :** କେବଳ ଅନ୍ୟମାନଙ୍କର ଦୋଷ ହିଁ ନୁହେଁ, ପ୍ରତ୍ୟେକ କଥାରେ, ମିଛ କହି ଦେଇଥିବ, କିଛି ଓଲଟା ହୋଇଥିବ, ଯାହା କିଛି ହିଂସା ହୋଇଥିବ, ପାଞ୍ଚ ମହାବ୍ରତରୁ କୌଣସି ବି ମହାବ୍ରତ ଭାଙ୍ଗେ ତେବେ ସେ ସବୁର ପ୍ରତିକ୍ରମଣ କରିବାର ଅଛି ।

## ୨. ପ୍ରତ୍ୟେକ ଧର୍ମ ପ୍ରରୂପିତ କଲେ ପ୍ରତିକ୍ରମଣ

ଭଗବାନ କହିଛନ୍ତି ଯେ ଆଲୋଚନା ପ୍ରତିକ୍ରମଣ ଏବଂ ପ୍ରତ୍ୟାଖ୍ୟାନକୁ ଛାଡ଼ି ଅନ୍ୟ କୌଣସି ବ୍ୟବହାର ଧର୍ମ ହିଁ ନାହିଁ । କିନ୍ତୁ ଯଦି ତାହା କ୍ୟାଶ୍ ହେବ ତେବେ, ଉଧାର ଚଳିବ ନାହିଁ । କେଉଁ ବ୍ୟକ୍ତିକୁ ଗାଳି ଦେଲେ, ଯାହା ଏବେ ହେଲା ତାହା ଲକ୍ଷ୍ୟରେ ରଖ, କାହା ସହିତ କ'ଣ ହେଲା ସେସବୁ, ଏବଂ ପୁଣି ଆଲୋଚନା କରି, କ୍ୟାଶ୍(ନଗଦ) ପ୍ରତିକ୍ରମଣ ଏବଂ ପ୍ରତ୍ୟାଖ୍ୟାନ କର । ତାହାକୁ ଭଗବାନ ବ୍ୟବହାର-

*ନିଶ୍ଚୟ* ଉଭୟ କହିଛନ୍ତି । କିନ୍ତୁ ତାହା କାହାଦ୍ୱାରା ହୋଇପାରିବ ? *ସମକିତ୍* ହେବା ପରେ ହିଁ ହୋଇପାରିବ । ସେପର୍ଯ୍ୟନ୍ତ ଯଦି କରିବାର ଥିବ ତଥାପି ହେବନାହିଁ । *ସମକିତ୍* ହୋଇନାହିଁ ଆଉ ତଥାପି କେହି ଆମର ଏଠୁ ଆଲୋଚନା-ପ୍ରତିକ୍ରମଣ-ପ୍ରତ୍ୟାଖ୍ୟାନ ଶିଖିକରି ଯାଏ ତେବେ ମଧ୍ୟ କାମ କାଢ଼ିନେବ । ପଛେ ସଂକ୍ଷେପରେ ଶିଖିଯାଉ ତଥାପି ଅସୁବିଧା ନାହିଁ । *ସମକିତ୍*(ସ୍ଥିତି) ତା' ସାମ୍ନାରେ ଆସି ଉଭା ରହିବ ।

ଯାହାର ଆଲୋଚନା-ପ୍ରତିକ୍ରମଣ-ପ୍ରତ୍ୟାଖ୍ୟାନ ପ୍ରକୃତ ଅଟେ, ତା'ଙ୍କୁ ଆତ୍ମା ପ୍ରାପ୍ତ ହେବା ବିନା ରହେ ହିଁ ନାହିଁ ।

**ପ୍ରଶ୍ନକର୍ତ୍ତା :** ପଶ୍ଚାତାପ କରୁଛି, ତାହା ପ୍ରତିକ୍ରମଣ ଅଟେ ଏବଂ ଏପରି କହିବା ଯେ ଏପରି କରିବି ନାହିଁ, ତାହା ପ୍ରତ୍ୟାଖ୍ୟାନ ?

**ଦାଦାଶ୍ରୀ :** ହଁ, ପଶ୍ଚାତାପ ତାହା ପ୍ରତିକ୍ରମଣ କୁହାଯାଏ । ଏବେ ପ୍ରତିକ୍ରମଣ କଲ କିନ୍ତୁ ପୁନର୍ବାର ଏପରି ଅତିକ୍ରମଣ ନ ହେଉ, ସେଥିପାଇଁ ଏପରି କହିବ ଯେ 'ଆଉ ଏପରି କରିବି ନାହିଁ' ତାହା ପ୍ରତ୍ୟାଖ୍ୟାନ କୁହାଯାଏ । ଆଉ ଏପରି କରିବି ନାହିଁ, ଏପରି ପ୍ରୋମିସ୍ କରୁଛି, ମନରେ ଏପରି ସ୍ଥିର କରିବାର ଅଛି ଏବଂ ତା'ପରେ ଯଦି ପୁଣି ସେପରି ହୋଇଯାଏ ତେବେ ଏକ ପରସ୍ତ ତ ଗଲା, କିନ୍ତୁ ପୁଣି ଦ୍ୱିତୀୟ ପରସ୍ତ ଆସେ ତେବେ ସେଥିରେ ଡରିବ ନାହିଁ, ବାରମ୍ବାର ସେହିପରି କରିଚାଲିବ ।

**ପ୍ରଶ୍ନକର୍ତ୍ତା :** ଆଲୋଚନା ମାନେ କ'ଣ ?

**ଦାଦାଶ୍ରୀ :** ହଁ, ଆଲୋଚନା ଅର୍ଥାତ, ତୁମେ ଯଦି କିଛି ଖରାପ କାମ କରିଥିବ, ତେବେ ତୁମର ଯିଏ ବି ଗୁରୁ ଥିବେ, ଅଥବା ପୁଣି ଜ୍ଞାନୀ ଥିବେ, ତାଙ୍କ ସାମ୍ନାରେ ସ୍ୱୀକାର କରିବ । ଯେପରି ହୋଇଥିବ ସେହି ସ୍ୱରୂପରେ ସ୍ୱୀକାର କରିବ ।

ଅର୍ଥାତ ଆମକୁ କାହାର ପ୍ରତିକ୍ରମଣ କରିବାର ଅଛି ? ତେବେ କୁହେ, 'ଯେତିକି ଅତିକ୍ରମଣ କରିଥିବା, ଯାହା ଲୋକଙ୍କୁ ସ୍ୱୀକାର୍ଯ୍ୟ ନୁହେଁ, ଯାହା ଲୋକନିନ୍ଦ୍ୟ ଅଟେ ଏପରି କର୍ମ, ଆଉ ସାମ୍ନାବାଲାକୁ ଦୁଃଖ ହୋଇଯାଏ ଏପରି ଯଦି ହୋଇଥିବ ତେବେ ସେସବୁ ଅତିକ୍ରମଣ କୁହାଯାଏ । ସେପରି ଯଦି ହୋଇଥିବ ତେବେ ପ୍ରତିକ୍ରମଣ କରିବାର ଆବଶ୍ୟକତା ଅଛି ।'

କର୍ମ ବାନ୍ଧେ କିଏ ? ତା'ଙ୍କୁ ଆମକୁ ଜାଣିବାକୁ ପଡ଼ିବ । ତୁମ ନାଁ କ'ଣ ?

**ପ୍ରଶ୍ନକର୍ତ୍ତା :** ଚନ୍ଦୁଭାଇ ।

**ଦାଦାଶ୍ରୀ :** 'ମୁଁ ଚନ୍ଦୁଭାଇ ଅଟେ' ତାହା ହିଁ କର୍ମ ବନ୍ଧନ କରାଏ । ପୁଣି ଯଦି

ରାତିରେ ଶୋଇଯାଏ, ତଥାପି ସାରାରାତି କର୍ମବନ୍ଧନ ହେଉଥାଏ । 'ମୁଁ ଚନ୍ଦୁଭାଇ ଅଟେ', ଏପରି ଯଦି ରୁହେ ତେବେ ଶୋଇବା ସମୟରେ ମଧ୍ୟ କର୍ମବନ୍ଧନ ହେଉଥାଏ । ତାହାର କାରଣ କ'ଣ ? କାହିଁକିନା ତାହା ଆରୋପିତ ଭାବ ଅଟେ । ସେଥିପାଇଁ ଦୋଷ ଲାଗୁ ହେଲା । ବାସ୍ତବରେ 'ନିଜେ' ଚନ୍ଦୁଭାଇ ନୁହେଁ ଆଉ ଯେଉଁଠି ତୁମେ ନାହଁ ସେଠି 'ମୁଁ ଅଟେ' ଏପରି ଆରୋପଣ କରୁଛ । ତାହା କଳ୍ପିତ ଭାବ ଅଟେ, ଏବଂ ନିରନ୍ତର ତାହାର ଦୋଷ ଲାଗୁ ହୁଏ ନା ! ! ତୁମକୁ ବୁଝାପଡୁଛି ? ! ପୁଣି ମୁଁ ଚନ୍ଦୁଭାଇ, ତା'ର ଶ୍ୱଶୁର ହେବି, ତା'ର ମାମୁଁ ହେବି, ତା'ର ଜେଜେ ହେବି, ଏସବୁ ଆରୋପିତ ଭାବ ଅଟେ, ଏହାଦ୍ୱାରା ନିରନ୍ତର କର୍ମବନ୍ଧନ ହୋଇଚାଲିଥାଏ । ରାତିରେ ନିଦରେ ବି କର୍ମ ବାନ୍ଧି ହୋଇଚାଲିଥାଏ । ରାତିରେ କର୍ମ ବାନ୍ଧି ହୁଏ, ସେଥିରେ ତ କିଛି ଚାରା ହିଁ ନାହିଁ କିନ୍ତୁ 'ମୁଁ ଚନ୍ଦୁଭାଇ ଅଟେ' ସେହି ଅହଂକାରକୁ ଯଦି ତୁମେ ନିର୍ମଳ କରିଦେବ, ତେବେ ତୁମକୁ କର୍ମ କମ ବାନ୍ଧିହେବ ।

ଅହଂକାର ନିର୍ମଳ କରିବା ପରେ ପୁଣି କ୍ରିୟା ସବୁ କରିବାକୁ ପଡ଼େ । କିପରି କ୍ରିୟା କରିବାକୁ ପଡ଼େ? ନା, ସକାଳେ ତୁମ ପୁଅର ପତ୍ନୀ ହାତରୁ କପ୍-ପ୍ଲେଟ ଭାଙ୍ଗିଗଲା, ସେତେବେଳେ ତୁମେ କହିଦେଲ ଯେ, 'ମୁଣ୍ଡରେ ତୋର ବୁଦ୍ଧି ନାହିଁ ।' ଏହାଦ୍ୱାରା ତା'କୁ ଯେଉଁ ଦୁଃଖ ହେଲା, ସେହି ସମୟରେ ତୁମକୁ ମନରେ ଏପରି ହେବା ଉଚିତ ଯେ ମୁଁ ତା'କୁ ଦୁଃଖ ଦେଲି । ସେଠି ପ୍ରତିକ୍ରମଣ ହେବା ଉଚିତ । ଦୁଃଖ ଦେଲ ଅର୍ଥାତ ଅତିକ୍ରମଣ କୁହାଯିବ । ଏବଂ ଅତିକ୍ରମଣ ହେଲେ ପ୍ରତିକ୍ରମଣ କରିବା ଦ୍ୱାରା ତାହା ସଫା ହୋଇଯାଏ । ସେ କର୍ମ ହାଲୁକା ହୋଇଯାଏ ।

କାହାକୁ କିଛି ଦୁଃଖ ହେବ, ଯଦି ଏପରି ବ୍ୟବହାର କରିବା ତେବେ ତାହା ଅତିକ୍ରମଣ କୁହାଯାଏ ଏବଂ ଅତିକ୍ରମଣ ହେଲେ ପ୍ରତିକ୍ରମଣ ନିଶ୍ଚିତ ହେବା ଉଚିତ । ଆଉ ସେ ବାରମାସରେ ଥରେ କରନ୍ତି, ସେପରି ନୁହେଁ, ଶୁଟ୍ ଅନ୍ ସାଇଟ୍ (ଦୋଷ ଦେଖିବାମାତ୍ରେ ଖତମ କର) ହେବା ଉଚିତ, ତେବେ ଏ ଦୁଃଖ କିଛି କମ ହେବ । ବୀତରାଗଙ୍କ କହିଯାଇଥିବା ମତ ଅନୁସାରେ ଚାଲିବା ତେବେ ଦୁଃଖ ଯିବ ଅନ୍ୟଥା ଦୁଃଖ ଯିବନାହିଁ ।

**ପ୍ରଶ୍ନକର୍ତ୍ତା :** ଏହି ପ୍ରତିକ୍ରମଣ କିପରି କରିବା ଉଚିତ ?

**ଦାଦାଶ୍ରୀ :** ତୁମେ ଯଦି ଜ୍ଞାନପ୍ରାପ୍ତ କରିଥିବ ତେବେ ତୁମକୁ ତା' ଆତ୍ମା ଖବର ପଡ଼ିବ । ଅତଃ ଆତ୍ମାକୁ ସମ୍ବୋଧିତ କରି କରିବାର ଅଛି, ନହେଲେ ଭଗବାନଙ୍କୁ

ସମ୍ବୋଧିତ କରି କରିବ, 'ହେ ଭଗବାନ! ପଶ୍ଚାତାପ କରୁଛି, କ୍ଷମା ମାଗୁଛି ଏବଂ ଏବେ ଆଉ ଏପରି କରିବି ନାହିଁ।' ବାସ୍ ଏହା ହେଉଛି ପ୍ରତିକ୍ରମଣ!

**ପ୍ରଶ୍ନକର୍ତ୍ତା :** ଏହାଦ୍ୱାରା କ'ଣ ଧୋଇଯିବ?

**ଦାଦାଶ୍ରୀ :** ହଁ, ହଁ, ବିଲକୁଲ!! ପ୍ରତିକ୍ରମଣ କଲ ଏଣୁ ପୁଣି ରହିବ ନାହିଁ ନା?! ବହୁତ ଭାରୀ କର୍ମ ହୋଇଥିବ ତେବେ ଜଳି ଯାଇଥିବା ରସି ପରି ଦୃଶ୍ୟମାନ ହେବ କିନ୍ତୁ ହାତ ଲଗାଉ-ଲଗାଉ ଝଡ଼ିଯିବ।

**ପ୍ରଶ୍ନକର୍ତ୍ତା :** ସେ ପଶ୍ଚାତାପ କିପରି କରିବି? ସମସ୍ତଙ୍କୁ ଦେଖାଯିବା ପରି କରିବି ନା ମନରେ କରିବି?

**ଦାଦାଶ୍ରୀ :** ମନରେ। ମନରେ ଦାଦାଜୀଙ୍କୁ ସ୍ମରଣ କରି କହିବ ଯେ 'ଏହା ମୋର ଭୁଲ ହୋଇଛି, ଏବେ ଆଉ କରିବି ନାହିଁ।' ଏପରି ମନରେ ସ୍ମରଣ କରି କରିବ, ପରେ ଏପରି କରୁ କରୁ ସେ ସବୁ ଦୁଃଖ ବିସ୍ମୃତ ହୋଇଯିବ। ସେ ଭୁଲ ନିଃଶେଷ ହୋଇଯିବ। କିନ୍ତୁ ଏପରି ନ କରିବା ତେବେ ପୁଣି ଭୁଲ ସବୁ ବଢ଼ି ଚାଲିବ।

କେବଳ ଏହି ମାର୍ଗ ଏପରି ଅଟେ ଯେ ନିଜର ଦୋଷ ଦିଶିଚାଲେ ଏବଂ ଶୁଟ୍ ହୋଇଚାଲେ, ଏପରି କରୁ କରୁ ଦୋଷ ନିଃଶେଷ ହୋଇଯାଏ।

**ପ୍ରଶ୍ନକର୍ତ୍ତା :** ଗୋଟିଏ ପଟେ ପାପ କରିଚାଲେ ଏବଂ ଅନ୍ୟପଟେ ପଶ୍ଚାତାପ କରିଚାଲେ, ଏପରି ହେଲେ ତ ଚାଲୁ ହିଁ ରହିବ।

**ଦାଦାଶ୍ରୀ :** ଯେଉଁ ମଣିଷ ପାପ କରେ, ସେ ଯଦି ପଶ୍ଚାତାପ କରେ ତେବେ ସେ ନକଲି ପଶ୍ଚାତାପ କରିପାରିବ ହିଁ ନାହିଁ। ତା'ର ପଶ୍ଚାତାପ ପ୍ରକୃତ ହିଁ ହୋଇଥାଏ ଏବଂ ପଶ୍ଚାତାପ ପ୍ରକୃତ ହୋଇଥାଏ, ସେଥିପାଇଁ ପିଆଜର ପରସ୍ତ ଭଳି ଗୋଟିଏ ପରସ୍ତ ହଟେ। ତାହା ପରେ ମଧ୍ୟ ପିଆଜ ତ ତଥାପି ପୂର୍ଣ୍ଣ ହିଁ ଦିଶିବ। ପୁଣି ପରେ ଦ୍ୱିତୀୟ ପରସ୍ତ ହଟିବ। ପଶ୍ଚାତାପ କେବେ ବି ବ୍ୟର୍ଥ ଯାଏନାହିଁ।

**ପ୍ରଶ୍ନକର୍ତ୍ତା :** କିନ୍ତୁ ଭଲ ମନରେ କ୍ଷମା ମାଗିବାର ଅଛି ନା?

**ଦାଦାଶ୍ରୀ :** କ୍ଷମା ମାଗିବା ବାଲା ଭଲ ମନରେ ହିଁ କ୍ଷମା ମାଗେ ଆଉ ଖରାପ ମନରେ ମାଗିବ ତେବେ ମଧ୍ୟ ଚଳେଇ ନିଆଯିବ। ତେବେ ମଧ୍ୟ କ୍ଷମା ମାଗ।

**ପ୍ରଶ୍ନକର୍ତ୍ତା :** ତେବେ ତ ପୁଣି ତା'କୁ ଅଭ୍ୟାସ ପଡ଼ିଯିବ?

**ଦାଦାଶ୍ରୀ :** ଅଭ୍ୟାସ ପଡ଼ିଯିବ ତେବେ ପଛେ ପଡ଼ିଯାଉ। କିନ୍ତୁ କ୍ଷମା ମାଗ। କ୍ଷମା ନ ମାଗିଲେ ତ ଆସିଲା ଜାଣ!!! କ୍ଷମାର ଅର୍ଥ କ'ଣ? ତାହା ପ୍ରତିକ୍ରମଣ

କୁହାଯାଏ ଆଉ ଦୋଷକୁ କ'ଣ କହନ୍ତି ? ଅତିକ୍ରମଣ ।

କେହି ବ୍ରାଣ୍ଡି(ମଦ) ପିଏ ଏବଂ କୁହେ ଯେ ମୁଁ କ୍ଷମା ମାଗୁଛି, ତେବେ ମୁଁ କୁହେ ଯେ କ୍ଷମା ମାଗ । କ୍ଷମା ମାଗିଚାଲ ଏବଂ ପିଇଚାଲ । କିନ୍ତୁ ମନରେ ସ୍ଥିର କର ଯେ 'ଏବେ ମୋତେ ଛାଡ଼ି ଦେବାର ଅଛି ।' ହୃଦୟର ସହିତ ମନରେ ସ୍ଥିର କର ଯେ ମୋତେ ଛାଡ଼ି ଦେବାର ଅଛି ତେବେ ଦିନେ ତାହାର ଅନ୍ତ ଆସିବ । ମୋର ଏହି ବିଜ୍ଞାନ ଶତ-ପ୍ରତିଶତ ଅଟେ ।

ଏହା ତ ବିଜ୍ଞାନ ଅଟେ !! ଅଙ୍କୁରିତ ନହୋଇ ରହିବ ନାହିଁ । ତୁରନ୍ତ ଫଳ ଦେବାବାଲା ଅଟେ । 'ଦିସ୍ ଇଜ୍ ଦ କ୍ୟାଶ୍ ବ୍ୟାଙ୍କ ଅଫ୍ ଡିଭାଇନ୍ ସଲ୍ୟୁଶନ୍ ।' ଏହା 'କ୍ୟାଶ୍ ବ୍ୟାଙ୍କ' ଅଟେ ! ଦଶଲକ୍ଷ ବର୍ଷ ହେଲା ନଥିଲା । ଦୁଇ ଘଣ୍ଟାରେ ମୋକ୍ଷ ନେଇଯାଅ !! ଏଠାରେ ତୁ ଯାହା ମାଗିବୁ ତାହା ଦେବାପାଇଁ ପ୍ରସ୍ତୁତ ଅଛି । ତୁ ମାଗି ମାଗି ଥକି ଯିବୁ ।

କେଉଁ ମଣିଷକୁ ଚୋରି କରିବା ପରେ ଯଦି ପଶ୍ଚାତାପ ହୁଏ, ତେବେ ପ୍ରକୃତି ତା'କୁ ଛାଡ଼ିଦିଏ । ପଶ୍ଚାତାପ କଲା, ସେଥିପାଇଁ ଭଗବାନଙ୍କ ଠାରେ ଏହା ଦୋଷ ଗଣାଯାଏ ନାହିଁ । କିନ୍ତୁ ଜଗତର ଲୋକେ ଯାହା ବି ଦଣ୍ଡ ଦେବେ, ତାହାକୁ ଏହି ଜନ୍ମରେ ଭୋଗି ନେବାକୁ ପଡ଼ିବ ।

'ଏସବୁ ଭୁଲ ଅଟେ, ଏପରି କରିବା ଉଚିତ ନୁହେଁ' ଏପରି ସମସ୍ତେ କୁହନ୍ତି । ସେମାନେ ଉପରେ-ଉପରେ କୁହନ୍ତି । 'ସୁପରଫ୍ଲୁୟସ' କୁହନ୍ତି, 'ହାର୍ଟିଲି' କୁହନ୍ତି ନାହିଁ । ନହେଲେ ଯଦି 'ହାର୍ଟିଲି' କୁହେ ତେବେ ସେ ଦୋଷକୁ କିଛି ସମୟ ପରେ ନ ଯାଇ ଚାରା ହିଁ ନାହିଁ ! ତୁମର କେତେ ବି ଖରାପ ଦୋଷ ହେଉ କିନ୍ତୁ ଯଦି ତୁମକୁ ତାହା ପାଇଁ 'ହାର୍ଟିଲି' ବହୁତ ପଶ୍ଚାତାପ ହେବ ତେବେ ପୁଣି ସେ ଦୋଷ ହେବ ନାହିଁ । ଆଉ ଯଦି ପୁଣି ହୋଇଯାଏ ତେବେ ମଧ୍ୟ ସେଥିରେ ଅସୁବିଧା ନାହିଁ, କିନ୍ତୁ ବହୁତ ପଶ୍ଚାତାପ କରିବ ।

**ପ୍ରଶ୍ନକର୍ତ୍ତା :** ପ୍ରତିକ୍ରମଣ ଏବଂ ପଶ୍ଚାତାପରେ କ'ଣ ଫରକ ଅଛି ?

**ଦାଦାଶ୍ରୀ :** ପଶ୍ଚାତାପ ଅସ୍ପଷ୍ଟ ରୂପରେ ଅଟେ, ଖ୍ରୀଷ୍ଟିୟାନ ଲୋକେ ରବିବାରକୁ ଚର୍ଚ୍ଚରେ ପଶ୍ଚାତାପ କରନ୍ତି । ଯେଉଁ ପାପ କଲେ ତାହାର ଅସ୍ପଷ୍ଟ ରୂପରେ ପଶ୍ଚାତାପ କରନ୍ତି । ଏବଂ ପ୍ରତିକ୍ରମଣ ତ କିପରି ଯେ ଯିଏ ଗୁଳି ମାରିଲା, ଯିଏ ଅତିକ୍ରମଣ କଲା ସେ ପ୍ରତିକ୍ରମଣ କରେ, ତତ୍କ୍ଷଣ ! ଶୁଟ୍ ଅନ୍ ସାଇଟ୍ ତାହାକୁ ଧୋଇଦିଏ !!

ଆଲୋଚନା, ପ୍ରତିକ୍ରମଣ ଏବଂ ପ୍ରତ୍ୟାଖ୍ୟାନ ମହାବୀର ଭଗବାନଙ୍କ ସିଦ୍ଧାନ୍ତର ସାର ଅଟେ ଏବଂ ଅକ୍ରମ ମାର୍ଗରେ 'ଜ୍ଞାନୀପୁରୁଷ' ହିଁ ସାର ଅଟନ୍ତି, କେବଳ ଏତିକି ବୁଝିବାର ଆବଶ୍ୟକତା ଅଛି । ଆଜ୍ଞା ହିଁ ଧର୍ମ ଏବଂ ଆଜ୍ଞା ହିଁ ତପ । କିନ୍ତୁ ସେ ଦଖଲ ନ କରି ରହେ ନାହିଁ ନା ! ଅନାଦିରୁ ଖରାପ ଅଭ୍ୟାସ ଯଉ ପଡ଼ିଛି ।

## ୩. ନୁହେଁ 'ତାହା' ପ୍ରତିକ୍ରମଣ ମହାବୀରଙ୍କ

**ପ୍ରଶ୍ନକର୍ତ୍ତା :** ଅନାଦି କାଳରୁ ପ୍ରତିକ୍ରମଣ ତ କରିଆସିଛି, ତଥାପି ଛୁଟକାରା ତ ହେଲା ନାହିଁ ।

**ଦାଦାଶ୍ରୀ :** ପ୍ରକୃତ ପ୍ରତିକ୍ରମଣ କରିନାହାନ୍ତି । ପ୍ରକୃତ ପ୍ରତ୍ୟାଖ୍ୟାନ ଏବଂ ପ୍ରକୃତ ପ୍ରତିକ୍ରମଣ କରେ ତେବେ ତା'ର ବାଟ ଫିଟେ । ପ୍ରତିକ୍ରମଣ ଶୁଟ୍ ଅନ୍ ସାଇଟ୍ ହେବା ଉଚିତ । ଏବେ ଯଦି ମୋର ଗୋଟିଏ ଶବ୍ଦ ସାମାନ୍ୟ ତେଢ଼ା ବାହାରିଯାଏ, ତେବେ ମୋ ଦ୍ୱାରା ଭିତରେ ପ୍ରତିକ୍ରମଣ ହୋଇଯିବା ହିଁ ଉଚିତ । ତୁରନ୍ତ, ଅନ୍ ଦ ମୋମେଣ୍ଟ୍ । ଏଥିରେ ଉଧାର ଚଳିବ ନାହିଁ । ଏହାକୁ ତ ବାସି ରଖିହେବ ହିଁ ନାହିଁ ।

ପ୍ରତିକ୍ରମଣ ଅର୍ଥାତ ପଶ୍ଚାତାପ କରିବା, ତେବେ କାହାର ପଶ୍ଚାତାପ କରୁଛ ?

**ପ୍ରଶ୍ନକର୍ତ୍ତା :** ପଶ୍ଚାତାପ କରିପାରୁ ନାହୁଁ, କ୍ରିୟାସବୁ କରିବାରେ ଲାଗିଛୁ ।

**ଦାଦାଶ୍ରୀ :** ପ୍ରତିକ୍ରମଣ ଅର୍ଥାତ୍ ପଛକୁ ଫେରିବା । ଯେଉଁ ପାପ କରିଥିବ, କ୍ରୋଧ କରିଥିବ, ତାହା ଉପରେ ପଶ୍ଚାତାପ କରିବା, ତାହାକୁ ପ୍ରତିକ୍ରମଣ କହନ୍ତି ।

ପ୍ରତିକ୍ରମଣ କାହାକୁ କହିବା ଯେ ଯାହା କରିବା ଦ୍ୱାରା ଦୋଷ କମ ହେଉଥିବ । ଯାହା କରିବା ଦ୍ୱାରା ଦୋଷ ବଢ଼ିଚାଲେ, ତାହାକୁ ପ୍ରତିକ୍ରମଣ କିପରି କହିବା ? ଭଗବାନ ଏପରି କହିନଥିଲେ । ଭଗବାନ କୁହନ୍ତି, ଯେଉଁ ଭାଷା ବୁଝା ପଡୁଛି ସେହି ଭାଷାରେ ପ୍ରତିକ୍ରମଣ କର । ନିଜ ନିଜ ଭାଷାରେ ପ୍ରତିକ୍ରମଣ କରିନେବ । ନହେଲେ ଲୋକେ ପ୍ରତିକ୍ରମଣକୁ ବୁଝି ପାରିବେ ନାହିଁ । ଏହା ମାଗଧୀ ଭାଷାରେ ରଖାଯାଇଛି । ଏବେ ଏ ଲୋକେ ଗୁଜରାଟୀ ବି ବୁଝି ପାରୁନାହାନ୍ତି, ସେମାନଙ୍କୁ ମାଗଧୀରେ ପ୍ରତିକ୍ରମଣ କଲେ କ'ଣ ଫାଇଦା ହେବ ? ଏବଂ ସାଧୁ-ଆଚାର୍ଯ୍ୟ ବି ବୁଝୁନାହାନ୍ତି, ସେମାନଙ୍କ ଭିତରେ ବି ଦୋଷ କିଛି କମ ହୋଇନାହିଁ । ଅର୍ଥାତ ଏଥିରେ ଏଭଳି ପରିସ୍ଥିତି ହୋଇଯାଇଛି ।

ଭଗବାନ ମାଗଧୀ ଭାଷାରେ କେବଳ ନବକାର ମନ୍ତ୍ର ହିଁ ବୋଲିବାକୁ କହିଥିଲେ ଏବଂ ତାହା ବି ବୁଝିକରି ବୋଲିବ । ଅର୍ଥାତ କେବଳ ଏହି ନବକାର ମନ୍ତ୍ର ମାଗଧୀରେ ରଖିବା ପରି ଅଟେ, କାରଣ ଭଗବାନଙ୍କ ଶବ୍ଦ ଅଟେ । ନହେଲେ ପ୍ରତିକ୍ରମଣରେ ତ

ପ୍ରଥମେ ତାହାର ଅର୍ଥ ବୁଝିବାକୁ ପଡ଼ିବ ଯେ ମୁଁ ଏ ପ୍ରତିକ୍ରମଣ କରୁଛି ! କାହାର ? କେହି ମୋର ଅପମାନ କଲା ଅବା ମୁଁ କାହାର ଅପମାନ କଲି, ତାହାର ମୁଁ ପ୍ରତିକ୍ରମଣ କରୁଛି ।

ପ୍ରତିକ୍ରମଣ ଅର୍ଥାତ କଷାୟ ସବୁକୁ ନିଃଶେଷ କରିଦେବା ।

ଏ ଲୋକେ ବର୍ଷରେ ଥରେ ପ୍ରତିକ୍ରମଣ କରନ୍ତି, ସେତେବେଳେ ନୂଆ କପଡ଼ା ପିନ୍ଧି ଯାଆନ୍ତି । ପ୍ରତିକ୍ରମଣ ତାହା କ'ଣ ବାହାଘର ଅଟେ ନା କ'ଣ ? ପ୍ରତିକ୍ରମଣ କରିବା ଅର୍ଥାତ ବହୁତ ଗଭୀର ପଶ୍ଚାତାପ କରିବା ! ସେଠି ନୂଆ କପଡ଼ାର କି କାମ ? ! ସେଠି କ'ଣ ବାହାଘର ଅଛି ? ଉପରୁ ରାୟଶୀ ଏବଂ ଦେବଶୀ (ରାତି ସାରା ହୋଇଥିବା ଦୋଷର ପ୍ରତିକ୍ରମଣ ସକାଳେ ଏବଂ ଦିନସାରା ହୋଇଥିବା ଦୋଷର ପ୍ରତିକ୍ରମଣ ରାତିରେ କରିବା) । ସକାଳର ଖାଇବା ସନ୍ଧ୍ୟାକୁ ମନେ ରହୁନାହିଁ, ସେଠି ପ୍ରତିକ୍ରମଣ କିପରି କରିବେ ? !

ବୀତରାଗ ଧର୍ମ କାହାକୁ କହନ୍ତି ଯେ ପ୍ରତିଦିନ ପାଞ୍ଚଶହ-ପାଞ୍ଚଶହ ପ୍ରତିକ୍ରମଣ କରେ । ଜୈନ ଧର୍ମ ତ ସବୁ ଜାଗାରେ ଅଛି କିନ୍ତୁ ବୀତରାଗ ଧର୍ମ ନାହିଁ । ବାର ମାସରେ ଥରେ ପ୍ରତିକ୍ରମଣ କରେ, ତା'କୁ ଜୈନ କିପରି କହିବା ? ତଥାପି ସମ୍ବତ୍ସରୀ(ବର୍ଷକୁ ଥରେ) ପ୍ରତିକ୍ରମଣ କରନ୍ତି, ସେଥିରେ ଅସୁବିଧା ନାହିଁ ।

ମୁଁ ଏପରି କହୁଛି, କିନ୍ତୁ ମୁଁ ତ କହିବା ପୂର୍ବରୁ ହିଁ ପ୍ରତିକ୍ରମଣ କରିନେଇ ଥାଏ । ତୁମେ ଏପରି କହିବ ନାହିଁ । ମୁଁ ଏତେ କଠୋର କହୁଛି, ଭୁଲ ବାହାର କରୁଛି, ତଥାପି ମୁଁ ନିର୍ଦ୍ଦୋଷ ଦେଖୁଛି । କିନ୍ତୁ ଜଗତକୁ ବୁଝାଇବାକୁ ତ ପଡ଼ିବ ନା ? ଯଥାର୍ଥ, ପ୍ରକୃତ କଥା ତ ବୁଝାଇବାକୁ ପଡ଼ିବ ନା ? !

ଆତ୍ମଜ୍ଞାନ, ତାହା ମୋକ୍ଷ ମାର୍ଗ ଅଟେ । ଆତ୍ମଜ୍ଞାନ ପ୍ରାପ୍ତି ପରର ପ୍ରତିକ୍ରମଣ ମୋକ୍ଷମାର୍ଗ ଦେବ, ପରେ ସମସ୍ତ ସାଧନା ମୋକ୍ଷମାର୍ଗ ଦେବ ।

**ପ୍ରଶ୍ନକର୍ତ୍ତା :** ତେବେ ସେ ପ୍ରତିକ୍ରମଣ ତା'ର ଆତ୍ମଜ୍ଞାନ ହେବାର କାରଣ ହୋଇପାରିବ ?

**ଦାଦାଶ୍ରୀ :** ନା । ଏହି ପୁରୁଣାର ପ୍ରତିକ୍ରମଣ କରେ ଏବଂ ପୁଣି ମୋହର ନୂଆ ଅତିକ୍ରମଣ ସୃଷ୍ଟି ହୁଏ । ମୋହ ବନ୍ଦ ହୋଇନାହିଁ ନା ? ମୋହ ଅଛି ନା ? ଦର୍ଶନମୋହ, ଅର୍ଥାତ ପୁରୁଣା ସବୁ ପ୍ରତିକ୍ରମଣ କରିବାଦ୍ୱାରା ବିଲୟ ହୋଇଯିବେ କିନ୍ତୁ ନୂଆ ସୃଷ୍ଟି ହେବେ । ଯେତେବେଳେ ପ୍ରତିକ୍ରମଣ କରନ୍ତି, ସେହି ସମୟରେ ପୁଣ୍ୟ ବନ୍ଧନ ହୁଏ ।

ସଂସାରର ଲୋକେ ପ୍ରତିକ୍ରମଣ କରନ୍ତି, କେହି ଜାଗୃତ ଥିବେ ତେବେ ରାୟଶୀ-ଦେବଶୀ ଉଭୟ କରନ୍ତି, ତେବେ ସେତିକି ଦୋଷ କମ ହୋଇଗଲା । କିନ୍ତୁ ଯେପର୍ଯ୍ୟନ୍ତ ଦର୍ଶନମୋହନୀୟ ଅଛି, ସେପର୍ଯ୍ୟନ୍ତ ମୋକ୍ଷ ହେବନାହିଁ, ଦୋଷ ଉତ୍ପନ୍ନ ହୋଇଚାଲିଥିବ । ଯେତିକି ପ୍ରତିକ୍ରମଣ କରିବ ସେତିକି ସବୁ ଦୋଷ ଯିବ ।

ଅର୍ଥାତ ଏହି କାଳରେ ବର୍ତ୍ତମାନ 'ଶୁଟ୍ ଅନ୍ ସାଇଟ୍'ର କଥା ତ କୁଆଡ଼େ ଗଲା କିନ୍ତୁ କୁହନ୍ତି ଯେ, ସନ୍ଧ୍ୟାରେ ପୁରା ଦିନର ପ୍ରତିକ୍ରମଣ କରିବ । ସେ କଥା ମଧ୍ୟ କୁଆଡ଼େ ଗଲା । ସପ୍ତାହରେ ଥରେ-ଅଧେ କରିବ ସେ କଥା ମଧ୍ୟ କୁଆଡ଼େ ଗଲା ଏବଂ ପାକ୍ଷିକ (ତିନି ମାସରେ ଥରେ) ବି କୁଆଡ଼େ ଗଲା, ଆଉ ବାରମାସରେ ଥରେ କରନ୍ତି । ତାହାକୁ ବି ବୁଝୁନାହାନ୍ତି ଆଉ ଭଲ କପଡ଼ା ପିନ୍ଧି ବୁଲୁଥାନ୍ତି । ଅର୍ଥାତ ରିୟଲ ପ୍ରତିକ୍ରମଣ କେହି କରୁନାହାନ୍ତି । ସେଥିପାଇଁ ଦୋଷ ବଢ଼ି ଚାଲିଲା । ପ୍ରତିକ୍ରମଣ ତ ତାହାକୁ କହନ୍ତି ଯେ ଦୋଷ କମିଚାଲିବ ।

ଏ ନିରୁବେନକୁ ଯଦି ତୁମ ପାଇଁ ଟିକିଏ ବି ଓଲଟା ବିଚାର ଆସିଯାଏ ଯେ 'ଇଏ ଆସିଲେ ଏବଂ ଭିଡ଼ ହୋଇଗଲା ।' ଏତିକି ବିଚାର ଭିତରେ ଆସେ କିନ୍ତୁ ତୁମକୁ ଜାଣିବାକୁ ଦେବନାହିଁ । ଚେହେରା ହସ-ହସ ରଖିବ । ସେହି ସମୟରେ ପ୍ରତିକ୍ରମଣ କରିବ । ଓଲଟା ବିଚାର ଆସିଲା ତାହା ଅତିକ୍ରମଣ କଲା କୁହାଯିବ । ସେ ପ୍ରତିଦିନ ପାଞ୍ଚଶହ-ପାଞ୍ଚଶହ ପ୍ରତିକ୍ରମଣ କରେ ।

କେବଳ ଦୋଷ ହିଁ ହୋଇ ଚାଲୁଛି । ଭାନ୍(ହୋସ) ହିଁ ରହୁନାହିଁ ।

**ପ୍ରଶ୍ନକର୍ତ୍ତା :** ତାହା ତ ଭାବ ପ୍ରତିକ୍ରମଣ ଅଟେ । କ୍ରିୟା ପ୍ରତିକ୍ରମଣ ତ ହୋଇପାରିବ ହିଁ ନାହିଁ ନା ?

**ଦାଦାଶ୍ରୀ :** ନା, କ୍ରିୟାରେ ପ୍ରତିକ୍ରମଣ ହୁଏ ହିଁ ନାହିଁ, ପ୍ରତିକ୍ରମଣ ତ, ଭାବ ପ୍ରତିକ୍ରମଣର ହିଁ ଆବଶ୍ୟକତା ଅଛି, ଯାହା କ୍ରିୟାକାରୀ ଅଟେ । କ୍ରିୟା ପ୍ରତିକ୍ରମଣ କିଛି ନାହିଁ ।

**ପ୍ରଶ୍ନକର୍ତ୍ତା :** ଦ୍ରବ୍ୟ ପ୍ରତିକ୍ରମଣ ଏବଂ ଭାବ ପ୍ରତିକ୍ରମଣ ଅର୍ଥାତ କ'ଣ ? ଏହା ଟିକିଏ ବୁଝାନ୍ତୁ ।

**ଦାଦାଶ୍ରୀ :** ଭାବ ଏପରି ରଖିବ ଯେ 'ଏପରି ନ ହେବା ଉଚିତ', ଏହା ଭାବ ପ୍ରତିକ୍ରମଣ କୁହାଯାଏ । ଆଉ ଦ୍ରବ୍ୟ ପ୍ରତିକ୍ରମଣରେ ତ ପୁରା ସବୁ, ଗୋଟିଏ-ଗୋଟିଏ ଶବ୍ଦ କହିବାକୁ ପଡ଼େ । ଯେତେ ଶବ୍ଦ ଲେଖା ହୋଇଥାଏ ନା, ସେ ସବୁ

ଆମକୁ କହିବାକୁ ପଡ଼େ । ତାହା ଦ୍ରବ୍ୟ ପ୍ରତିକ୍ରମଣ କୁହାଯାଏ ।

ତେବେ ଏହି ପ୍ରତିକ୍ରମଣ ତ, ଯଦି ଆଜି ଭଗବାନ ଏଠି ଥାଆନ୍ତେ ନା ତେବେ ଏ ସମସ୍ତଙ୍କୁ ଜେଲରେ ଭର୍ତ୍ତି କରି ଦେଇଥାନ୍ତେ । ଆରେ ଭାଇ ଏମିତି କଲୁ? ପ୍ରତିକ୍ରମଣ ଅର୍ଥାତ ଗୋଟିଏ ଦୋଷର କ୍ଷମା ମାଗିନେବା, ସଫା କରିଦେବା । ଗୋଟିଏ ଦାଗ ଯଦି ଲାଗିଥିବ, ତେବେ ସେ ଦାଗକୁ ଧୋଇ ସଫା କରିଦେବା । ସ୍ଥାନ ଯେପରି ଥିଲା ସେହିପରି କରିଦେବା, ତାହାର ନାମ ପ୍ରତିକ୍ରମଣ । ଆଜିକାଲି ତ କେବଳ ଦାଗବାଲା କପଡ଼ା ହିଁ ଦେଖିବାକୁ ମିଳୁଛି ।

ଏମାନେ ତ, ଗୋଟିଏ ବି ଦୋଷର ପ୍ରତିକ୍ରମଣ କଲେ ନାହିଁ ଏବଂ ନିରୋଳା ଦୋଷର ଭଣ୍ଡାର ହୋଇଗଲେ ।

ଏ ନୀରୂବେନ, ତାଙ୍କର ସମସ୍ତ ଆଚାର-ବିଚାର କାହିଁକି ଉଚ୍ଚ ହୋଇଗଲାଣି ? ପ୍ରତିଦିନ ପାଞ୍ଚଶହ-ପାଞ୍ଚଶହ ପ୍ରତିକ୍ରମଣ କରୁଛି ଏବଂ ଏବେ କହୁଛି ଯେ ଭିତରେ ତ ବାରଶହ-ବାରଶହ ପ୍ରତିକ୍ରମଣ ହେଉଛି । ଆଉ ଏ ଲୋକମାନେ ଗୋଟିଏ ବି କଲେ ନାହିଁ !

ସର୍ବଦା, କରିବା ଦ୍ୱାରା ହିଁ ଆବରଣ ଆସେ । ଆବରଣ ଆସିଲେ ଭୁଲ ଢାଙ୍କି ହୋଇଯାଏ, ସେଥିପାଇଁ ଭୁଲ ଦେଖାଯାଏ ହିଁ ନାହିଁ । ଭୁଲ ତ, ଯେବେ ଆବରଣ ଭାଙ୍ଗିବ ସେତେବେଳେ ଦେଖାଯିବ ଏବଂ ସେ ଆବରଣ ଜ୍ଞାନୀପୁରୁଷଙ୍କ ଦ୍ୱାରା ଭାଙ୍ଗି ପାରିବ, ଅନ୍ୟଥା ନିଜଦ୍ୱାରା ଆବରଣ ଭାଙ୍ଗିହେବ ନାହିଁ । ଜ୍ଞାନୀପୁରୁଷ ତ ସବୁ ଆବରଣ ଫ୍ରାକ୍‌ଚର କରି ଭାଙ୍ଗି ଦିଅନ୍ତି ! !

**ପ୍ରଶ୍ନକର୍ତ୍ତା :** କେଉଁ ପ୍ରତିକ୍ରମଣ ଶୁଦ୍ଧ ଗଣାଯାଏ ? ପ୍ରକୃତ ପ୍ରତିକ୍ରମଣ କିପରି କରାଯାଏ ?

**ଦାଦାଶ୍ରୀ :** ସମକିତ ହେବାପରେ ପ୍ରକୃତ ପ୍ରତିକ୍ରମଣ ହୋଇପାରିବ । ସମ୍ୟକତ୍ୱ ହେବା ପରେ, ଦୃଷ୍ଟି ସଳଖ ହେବା ପରେ, ଆତ୍ମଦୃଷ୍ଟି ହେବା ପରେ ପ୍ରକୃତ ପ୍ରତିକ୍ରମଣ ହୋଇପାରିବ । କିନ୍ତୁ ସେପର୍ଯ୍ୟନ୍ତ ଯଦି ପ୍ରତିକ୍ରମଣ କରେ ଏବଂ ପଶ୍ଚାତାପ କରେ ତେବେ ତାହାଦ୍ୱାରା କମ ହୋଇଯିବ ସବୁ । ଆତ୍ମଦୃଷ୍ଟି ହୋଇନଥିବ ଆଉ ସଂସାରର ଲୋକେ ଭୁଲ ହେବା ପରେ ପଶ୍ଚାତାପ କରିବେ ଏବଂ ପ୍ରତିକ୍ରମଣ କରିବେ ତେବେ ତାହାଦ୍ୱାରା ପାପ କମ ବନ୍ଧା ହେବ । ବୁଝାପଡ଼ିଲା ନା ? ପ୍ରତିକ୍ରମଣ-ପଶ୍ଚାତାପ କରିଲେ କର୍ମ ଉଡ଼ିଯାଏ !

କପଡ଼ାରେ ଚାହା ଦାଗ ଲାଗିଲେ ତୁରନ୍ତ ତାହାକୁ ଧୋଇ ଦେଉଛ । ଏପରି କାହିଁକି ?

**ପ୍ରଶ୍ନକର୍ତ୍ତା :** ଦାଗ ଚାଲିଯାଉ, ସେଥିପାଇଁ ।

**ଦାଦାଶ୍ରୀ :** ସେହିପରି ଭିତରେ ଦାଗ ଲାଗିଲେ ତୁରନ୍ତ ଧୋଇଦେବା ଉଚିତ । ଏମାନେ ତୁରନ୍ତ ଧୋଇ ଦିଅନ୍ତି । କିଛି କଷାୟ ଉତ୍ପନ୍ନ ହେଲା, କିଛି ହେଲା ମାନେ ତୁରନ୍ତ ଧୋଇ ଦିଅନ୍ତି ତେବେ ସଫା ହିଁ ସଫା, ସୁନ୍ଦର ହିଁ ସୁନ୍ଦର । ତୁମେ ତ ବାର ମାସରେ ଗୋଟିଏ ଦିନ କରୁଛ, ସେହିଦିନ ସବୁ କପଡ଼ା ଭିଜେଇ ଦେଉଛ ? !

ଆମ ପ୍ରତିକ୍ରମଣ ଶୁଟ୍ ଅନ୍ ସାଇଟ୍ ଅଟେ । ଅର୍ଥାତ ତୁମେ ଯେଉଁ କରୁଛ ତାହା ପ୍ରତିକ୍ରମଣ କୁହାଯାଏ ନାହିଁ । କାହିଁକିନା ତୁମର ଗୋଟିଏ ବି କପଡ଼ା ଧୋଇହୁଏ ନାହିଁ ଆଉ ଆମର ତ ସବୁ ଧୋଇହୋଇ ସ୍ୱଚ୍ଛ ହୋଇଗଲା । ପ୍ରତିକ୍ରମଣ ତ ତାହାକୁ କୁହାଯିବ ଯେ ଯାହାଦ୍ୱାରା କପଡ଼ା ଧୋଇହୋଇ ସ୍ୱଚ୍ଛ ହୋଇଯାଏ ।

ପ୍ରତିଦିନ ଗୋଟିଏ-ଗୋଟିଏ କରି କପଡ଼ା ଧୋଇବାକୁ ପଡ଼ିବ । ଯେବେକି ଜୈନ କ'ଣ କରନ୍ତି ? ଯେତେବେଳେ ବାର ମାସ ହୋଇଯାଏ, ସେତେବେଳେ ବାର ମାସର ସବୁ କପଡ଼ା ଏକ ସଙ୍ଗରେ ଧୁଅନ୍ତି ! ଭଗବାନଙ୍କ ଠାରେ ତ ଏପରି ଚଳେ ନାହିଁ । ଏମାନେ ବାରମାସରେ ଥରେ କପଡ଼ା ଭିଜାନ୍ତି ନା ନାହିଁ ? ଏହା ତ ଗୋଟିଏ-ଗୋଟିଏ କରି ଧୋଇବାକୁ ପଡ଼ିବ । ପ୍ରତିଦିନ ପାଞ୍ଚଶହ-ପାଞ୍ଚଶହ କପଡ଼ା(ଦୋଷ) ଦିନସାରା ଧୁଆଯିବ ତେବେ କାମ ହେବ ।

ଯେତିକି ଦୋଷ ଦେଖାଯିବ, ସେତିକି କମ ହୋଇଚାଲିବ । ଏମାନଙ୍କୁ ପ୍ରତିଦିନ ପାଞ୍ଚଶହ ଦୋଷ ଦେଖାଯାଉଛି । ଅନ୍ୟମାନଙ୍କୁ ଦେଖାଯାଉନାହିଁ, ତାହାର କାରଣ କ'ଣ ? ଏବେ ଅପରିପକ୍ୱ ଅଛି ସେତିକି, କ'ଣ ଦୋଷରହିତ ହୋଇଗଲା, ଯେ ଦେଖାଯାଉ ନାହିଁ ? !

ଭଗବାନ ପ୍ରତିଦିନ (ନିଜ ଦୋଷର) ହିସାବ କିତାବ ଲେଖିବା ପାଇଁ କହିଥିଲେ, ଏବେ ବାରମାସରେ ଥରେ ହିସାବ କିତାବ ଲେଖନ୍ତି । ଯେବେ ପର୍ଯ୍ୟୁଷଣ ଆସେ ତେବେ । ଭଗବାନ କହିଥିଲେ ଯେ ପ୍ରକୃତ ବ୍ୟାପାରୀ ହୋଇଥିବ ତେବେ ପ୍ରତିଦିନ ଲେଖିବ ଏବଂ ସନ୍ଧ୍ୟାରେ ହିସାବ ବାହାର କରିବ । ବାରମାସରେ ଥରେ ହିସାବ କିତାବ ଲେଖେ, ସେ ସମୟରେ ପୁଣି କ'ଣ ମନେ ଥିବ ? ସେ ସମୟରେ କେଉଁ ହିସାବ ମନେ ଥିବ ? ଭଗବାନ କହିଥିଲେ ଯେ ପ୍ରକୃତ ବ୍ୟାପାରୀ ହେବ ଏବଂ ଆଜିର ହିସାବ

ଆଜି ଲେଖିବ ଏବଂ ହିସାବରେ କିଛି ଭୁଲ ହୋଇଯାଇଥିବ, ଅବିନୟ ହୋଇଥିବ ତେବେ ତୁରନ୍ତ ପ୍ରତିକ୍ରମଣ କରିବ, ତାହାକୁ ଲିଭେଇ ଦେବ ।

## ୪. ଅହୋ ! ଅହୋ ! ଏ ଜାଗୃତ ଦାଦା

ଏହି ଦୁନିଆରେ ସମସ୍ତେ ନିର୍ଦ୍ଦୋଷ ଅଟନ୍ତି । କିନ୍ତୁ ଦେଖ ଏପରି କଠୋର ବାଣୀ ବାହାରୁଛି ନା ?! ମୁଁ ତ ଏ ସମସ୍ତଙ୍କୁ ନିର୍ଦ୍ଦୋଷ ଦେଖିଛି, ଜଣେ ହେଲେ ବି ଦୋଷୀ ନାହିଁ । ମୋତେ ଦୋଷୀ ଦେଖାଯାଏ ହିଁ ନାହିଁ, କେବଳ ଦୋଷୀ କହିଦିଏ । ଏପରି କେଉଁଠି କୁହାଯାଉଥିବ ? କହିବା କ'ଣ ଅନିବାର୍ଯ୍ୟ ଅଟେ ? କାହା ବିଷୟରେ ବି କହିବା ଉଚିତ ନୁହେଁ । ତାହା ପଛରେ ତୁରନ୍ତ ତାହାର ପ୍ରତିକ୍ରମଣ ଚାଲୁ ରହିଥାଏ । ଏହା ମୋର ଚାରି ଡିଗ୍ରୀ କମ ଅଛି, ତାହାର ଏହା ପରିଣାମ ଅଟେ । କିନ୍ତୁ ପ୍ରତିକ୍ରମଣ ନକରି ଚଳିବ ନାହିଁ ।

ମୁଁ କିଛି କହିଦିଏ, କଠୋର ଶବ୍ଦ କହେ, ତାହା ଜାଣି-ଶୁଣି କହେ କିନ୍ତୁ ପ୍ରକୃତି ପ୍ରତି ମୋର ଭୁଲ ତ ହେଲା ନା ! ସେଥିପାଇଁ ମୁଁ ତାହାର ପ୍ରତିକ୍ରମଣ (ଏ.ଏମ. ପଟେଲ ପାଖରୁ) କରାଏ । ପ୍ରତ୍ୟେକ ଭୁଲର ପ୍ରତିକ୍ରମଣ ଥାଏ । ସାମ୍ନାବାଲାର ମନ ଭାଙ୍ଗି ନଯାଉ, ମୋର ଏପରି ରହେ ।

ମୋ ଦ୍ୱାରା 'ଅଛି' ତାହାକୁ 'ନାହିଁ' ଏପରି କୁହାଯାଇ ପାରିବ ନାହିଁ ଏବଂ 'ନାହିଁ' ତାହାକୁ 'ଅଛି' ଏପରି କୁହାଯାଇ ପାରିବ ନାହିଁ । ସେଥିପାଇଁ ମୋଦ୍ୱାରା କିଛି ଲୋକଙ୍କୁ ଦୁଃଖ ହୋଇଯାଏ । ଯଦି 'ନାହିଁ' ତାହାକୁ ମୁଁ 'ଅଛି' କହିବି ତେବେ ତୁମ ମନରେ ଭ୍ରମ ସୃଷ୍ଟି ହୋଇଯିବ । ଏବଂ ଏପରି କହିବା ଦ୍ୱାରା ସେମାନଙ୍କ (ପ୍ରତିପକ୍ଷଙ୍କ) ମନ ଉପରେ ଓଲଟା ପ୍ରଭାବ ହେବ ଯେ 'ଏପରି କାହିଁକି କହୁଛନ୍ତି ?' ସେଥିପାଇଁ ଏପରି ଯେବେ କୁହାଯାଇଥିବ ତେବେ ମୋତେ ତାହାର ପ୍ରତିକ୍ରମଣ କରିବାକୁ ପଡ଼େ । କାହିଁକିନା ସେମାନଙ୍କୁ ଦୁଃଖ ନ ହେବା ଉଚିତ । କେହି ମାନୁଥିବ ଯେ ଏହି ଅଶ୍ୱତ୍ଥ ଗଛରେ ଭୂତ ଅଛି ଆଉ ମୁଁ ଯଦି କହେ ଯେ ଭୂତ ଭଳି କିଛି ନାହିଁ ଏ ଗଛରେ ତେବେ ଏହାଦ୍ୱାରା ତା'କୁ ଦୁଃଖ ତ ହେବ । ସେଥିପାଇଁ ପୁଣି ମୋତେ ପ୍ରତିକ୍ରମଣ କରିବାକୁ ପଡ଼େ । ତାହା ତ ସବୁବେଳେ କରିବାକୁ ହିଁ ପଡ଼ିବ ନା !

**ପ୍ରଶ୍ନକର୍ତ୍ତା :** ଅନ୍ୟମାନଙ୍କ ବୁଝିବାରେ ଯଦି ଭୁଲ ଲାଗୁଥିବ ତେବେ ତାହା ପାଇଁ କ'ଣ କରିବୁ ?

**ଦାଦାଶ୍ରୀ :** ଏ ଯେତେ ବି ସତ୍ୟ ଅଛି, ସେ ସବୁ ବ୍ୟବହାରିକ ସତ୍ୟ ଅଟେ ।

ସେ ସବୁ ମିଥ୍ୟା ଅଟେ । ବ୍ୟବହାରିକ ରୂପରେ ସତ୍ୟ । ମୋକ୍ଷରେ ଯିବାକୁ ଥିବ ତେବେ ସବୁ ମିଥ୍ୟା ଅଟେ । ସବୁର ପ୍ରତିକ୍ରମଣ କରିବାକୁ ପଡ଼ିବ । 'ମୁଁ ଆଚାର୍ଯ୍ୟ ଅଟେ' ତାହାର ବି ପ୍ରତିକ୍ରମଣ କରିବାକୁ ପଡ଼ିବ । 'ମୁଁ ନିଜକୁ ନିଜେ ଆଚାର୍ଯ୍ୟ ମାନିଲି' ତାହାର ବି ପ୍ରତିକ୍ରମଣ କରିବାକୁ ପଡ଼ିବ । କାହିଁକିନା 'ମୁଁ ଶୁଦ୍ଧାତ୍ମା ଅଟେ' । ଅର୍ଥାତ ଏ ସବୁ ମିଛ । ତୋତେ ଏହା ବୁଝାପଡୁଛି ନା ନାହିଁ ?

**ପ୍ରଶ୍ନକର୍ତ୍ତା :** ହଁ ବୁଝାପଡୁଛି ।

**ଦାଦାଶ୍ରୀ :** ସବୁ ମିଛ । ଲୋକେ ତ ନ ବୁଝିବା କାରଣରୁ କହନ୍ତି ଯେ 'ମୁଁ ସତ୍ୟ କହୁଅଛି ।' ଆରେ, ସତ୍ୟ କହିବା ତେବେ କୌଣସି ପ୍ରତ୍ୟାଘାତ ହିଁ ହୁଏ ନାହିଁ !

ଏପରି ଅଟେ, ମୁଁ ଯେଉଁ ସମୟରେ କୁହେ, ସେହି ସମୟରେ ମୋର ଜୋରଦାର ପ୍ରତିକ୍ରମଣ ବି ଚାଲୁ ରହିଥାଏ । କହିବା ସମୟରେ, ସାଥେ ସାଥେ ।

**ପ୍ରଶ୍ନକର୍ତ୍ତା :** କିନ୍ତୁ ଯେଉଁ କଥା ସତ, ତାହା କହୁଥିଲେ, ତାହାପାଇଁ କି ପ୍ରତିକ୍ରମଣ ?

**ଦାଦାଶ୍ରୀ :** ନା, କିନ୍ତୁ ତଥାପି ପ୍ରତିକ୍ରମଣ ତ କରିବାକୁ ହିଁ ପଡ଼ିବ ନା । ତୁ କାହାର ଦୋଷ ଦେଖିଲୁ ହିଁ କାହିଁକି ? ନିର୍ଦ୍ଦୋଷ ଅଟେ ତଥାପି ଦୋଷ କାହିଁକି ଦେଖିଲୁ ? ନିର୍ଦ୍ଦୋଷ ଅଟେ ତଥାପି ତା'ର ନିନ୍ଦା ତ ହେଲା ନା ? ଯେଉଁ କଥାରେ କାହାର ନିନ୍ଦା ହୁଏ, ଏଭଳି ସତ କଥା ବି କହିବା ଉଚିତ ନୁହେଁ । ଏଭଳି ସତ କଥା ମଧ୍ୟ ଦୋଷ ଅଟେ । ସଂସାରରେ ସତକଥା କହିବା ମଧ୍ୟ ଦୋଷ ଅଟେ । ସତକଥା ହିଂସକ ନହେବା ଉଚିତ । ଏହାକୁ ହିଂସକ ବାଣୀ କୁହାଯିବ ।

ଆଲୋଚନା, ପ୍ରତିକ୍ରମଣ ଏବଂ ପ୍ରତ୍ୟାଖ୍ୟାନ, ଏହା ମୋକ୍ଷମାର୍ଗ ଅଟେ । ଆମ ମହାତ୍ମା କ'ଣ କରନ୍ତି ? ସାରାଦିନ ଆଲୋଚନା, ପ୍ରତିକ୍ରମଣ ଏବଂ ପ୍ରତ୍ୟାଖ୍ୟାନ ହିଁ କରିଚାଲିଥାନ୍ତି । ଏବେ ତାଙ୍କୁ କହିବା ଯେ 'ତୁମେ ଏହି ରାସ୍ତାରେ ଚାଲ । ବ୍ରତ, ନିୟମ କର ।' ତେବେ କହିବେ, 'ମୋତେ ବ୍ରତ, ନିୟମର କ'ଣ କରିବାର ଅଛି ? ମୋ ଭିତରେ ଶାନ୍ତି ଅଛି, ମୋତେ ଚିନ୍ତା ନାହିଁ । *ଉପାଧି* ନାହିଁ । ନିରନ୍ତର ସମାଧିରେ ରହିପାରୁଛି । ପୁଣି କ'ଣ ପାଇଁ ?' ତାହା ତ କ୍ଲେଶ କୁହାଯାଏ । ଉପଧାନ ତପ ଏବଂ ଅମକ ତପ । ସେସବୁ ତ ଅସୁବିଧାରେ ଫଶିଥିବା ଲୋକେ କରନ୍ତି । ଯାହାଙ୍କୁ ଆବଶ୍ୟକତା ଅଛି, ସଉକ ଅଛି । ସେଥିପାଇଁ ମୁଁ କହେ ଯେ ଏହି ତପ ତ ସୌଖୀନ ଲୋକଙ୍କ କାମ ଅଟେ । ଯେଉଁମାନେ ସଂସାରର ସୌଖୀନ ଅଟନ୍ତି, ସେମାନଙ୍କୁ ତପ କରିବା ଉଚିତ ।

**ପ୍ରଶ୍ନକର୍ତ୍ତା :** କିନ୍ତୁ ଏପରି ମାନ୍ୟତା ଅଛି ଯେ ତପ କରିବା ଦ୍ୱାରା କର୍ମର ନିର୍ଜରା ହୁଏ ।

**ଦାଦାଶ୍ରୀ :** ଏପରି କେବେବି ହୁଏ ନାହିଁ । କେଉଁ ତପ ଦ୍ୱାରା ନିର୍ଜରା ହୁଏ ? ଆନ୍ତରିକ ତପ ଦରକାର । ଅଦୀଠ ତପ, ଯାହା ମୁଁ କହେ ନା ଯେ ଆମର ସମସ୍ତ ମହାତ୍ମା ଅଦୀଠ ତପ କରନ୍ତି, ଯେଉଁ ତପ ଆଖିରେ ଦେଖାଯାଏ ନାହିଁ । ଆଉ ଆଖିରେ ଦେଖାଯାଉଥିବା ତପ ଆଉ ଯାହା ଜାଣି ହେଉଥିବ, ଏପରି ତପ, ସେ ସବୁର ଫଳ ପୁଣ୍ୟ ଅଟେ । ଆଉ ଅଦୀଠ ତପ ଅର୍ଥାତ ଭିତରର ତପ, ଆନ୍ତରିକ ତପ, ଯାହା ବାହାରକୁ ଦେଖାଯାଏ ନାହିଁ, ସେସବୁର ଫଳ ମୋକ୍ଷ ଅଟେ ।

ସାଧ୍ୱୀଜୀମାନଙ୍କୁ କ'ଣ କରିବା ଉଚିତ ? ସାଧ୍ୱୀଜୀମାନେ ଜାଣନ୍ତି ଯେ ଆମକୁ କଷାୟ ହେଉଛି, ସାରାଦିନ କଷାୟ ହୋଇଚାଲିଥାଏ, ତେବେ ସେମାନଙ୍କୁ କ'ଣ କରିବା ଉଚିତ ? ସନ୍ଧ୍ୟାରେ ବସି ପୁରା ଗୋଟିଏ ଗୁଣସ୍ଥାନକ, ଏହି କଷାୟ ଭାବ ହେଲା, ଯାଙ୍କ ପ୍ରତି ଏହି କଷାୟ ଭାବ ହେଲା, ଯାଙ୍କ ପ୍ରତି ଏହି କଷାୟ ଭାବ ହେଲା, ବସି ତାଙ୍କରି ପାଇଁ ଏହିପରି ପ୍ରତିକ୍ରମଣ କରିବା ଉଚିତ ଏବଂ ପ୍ରତ୍ୟାଖ୍ୟାନ କରିବା ଉଚିତ ଯେ 'ଏପରି କରିବି ନାହିଁ, ଏପରି କରିବି ନାହିଁ', ତେବେ ସେ ମୋକ୍ଷମାର୍ଗରେ ଚାଲୁଛନ୍ତି ।

ଏପରି ତ କିଛି କରନ୍ତି ନାହିଁ, ଏଣୁ କ'ଣ ହେବ ? ଏହିପରି ମୋକ୍ଷମାର୍ଗକୁ ବୁଝିବା ତେବେ ସେହି ରାସ୍ତାରେ ଚାଲି ପାରିବା ନା, ବୁଝିବାର ଆବଶ୍ୟକତା ଅଛି ।

**ପ୍ରଶ୍ନକର୍ତ୍ତା :** ଯେପର୍ଯ୍ୟନ୍ତ ତାଙ୍କଠାରୁ ପ୍ରତ୍ୟକ୍ଷ କ୍ଷମା ନମାଗିଛୁ, ସେପର୍ଯ୍ୟନ୍ତ ତାଙ୍କୁ ଭିତରେ ଖେଞ୍ଚୁଥିବ ନା ! ଅତଃ ପ୍ରତ୍ୟକ୍ଷ କ୍ଷମା ତ ମାଗିବାକୁ ପଡ଼ିବ ନା ?

**ଦାଦାଶ୍ରୀ :** ପ୍ରତ୍ୟକ୍ଷ କ୍ଷମା ମାଗିବାର ଆବଶ୍ୟକତା ହିଁ ନାହିଁ । ଭଗବାନ ମନା କରିଛନ୍ତି । ଯଦି ଭଲ ମଣିଷ ହୋଇଥିବ ତେବେ, ତା'କୁ କ୍ଷମା ମାଗିବ, ପ୍ରତ୍ୟକ୍ଷ କ୍ଷମା ମାଗିବ ଆଉ ଯଦି ସେ କମଜୋର ମଣିଷ ହୋଇଥିବ ତେବେ କ୍ଷମା ମାଗିଲେ କଟାକ୍ଷ କରିବ । ଏବଂ କମଜୋର ମଣିଷ ଆହୁରି ବେଶୀ କମଜୋର ହୋଇଚାଲିବ । ଏଣୁ ପ୍ରତ୍ୟକ୍ଷ କରିବ ନାହିଁ ଆଉ ପ୍ରତ୍ୟକ୍ଷ କରିବାର ଥିବ ତେବେ ଯଦି ବହୁତ ଭଲ ମଣିଷ ହୋଇଥିବ, ତେବେ କରିବ । କମଜୋର ତ ଉପରୁ ମାରିବ । ଏବଂ ପୁରା ଜଗତ କମଜୋର ହିଁ ଅଟେ । ଓଲଟା କଟାକ୍ଷ କରିବ । 'ହଁ, ମୁଁ କହୁଥିଲି ନା, ତୁ ବୁଝୁନଥିଲୁ, ମାନୁ ହିଁ ନଥିଲୁ । ଏବେ ଆସିଲା ଠିକଣାକୁ ।' ଆରେ ଭାଇ, ସେ ଠିକଣାରେ ହିଁ ଅଛି, ସେ ବିଗିଡ଼ି ନାହିଁ । ତୁ ବିଗିଡ଼ି ଯାଇଛୁ, ସେ ତ ସୁଧୁରୁଅଛି ।

ମୋକ୍ଷମାର୍ଗରେ କ୍ରିୟାକାଣ୍ଡ ବା ଏପରି କିଛି ନଥାଏ । କେବଳ ସଂସାର ମାର୍ଗରେ କ୍ରିୟାକାଣ୍ଡ ଥାଏ । ସଂସାର ମାର୍ଗ ଅର୍ଥାତ ଯାହାକୁ ଭୌତିକ ସୁଖ ଦରକାର, ଅଲଗା କିଛି ଦରକାର, ତା'ପାଇଁ କ୍ରିୟାକାଣ୍ଡ । ମୋକ୍ଷମାର୍ଗରେ ଏପରି କିଛି ନଥାଏ । ମୋକ୍ଷମାର୍ଗ ମାନେ କ'ଣ ? ଆଲୋଚନା, ପ୍ରତିକ୍ରମଣ ଏବଂ ପ୍ରତ୍ୟାଖ୍ୟାନ । ଦୌଡ଼େଇ ଚାଲ ଗାଡ଼ି । ଏହା ଆମର ମୋକ୍ଷମାର୍ଗ । ସେଥିରେ କ୍ରିୟାକାଣ୍ଡ ଏବଂ ଏପରି କିଛି ନଥାଏ ନା !

ଆଲୋଚନା-ପ୍ରତିକ୍ରମଣ-ପ୍ରତ୍ୟାଖ୍ୟାନ, ଏହା ହିଁ ହେଉଛି ମୋକ୍ଷମାର୍ଗ । କେତେ (ଅନେକ) ଜନ୍ମରୁ ମୋର ଏହି ଲାଇନ(ମାର୍ଗ), କେତେ ଜନ୍ମରୁ ଆଲୋଚନା-ପ୍ରତିକ୍ରମଣ-ପ୍ରତ୍ୟାଖ୍ୟାନ କରି କରି ଏ ପର୍ଯ୍ୟନ୍ତ ପହଞ୍ଚିଛି ।

କଷାୟ କରିବ ନାହିଁ ଏବଂ ପ୍ରତିକ୍ରମଣ କରିବ, ଧର୍ମ କେବଳ ଏହି ଦୁଇଟି । କଷାୟ ନକରିବା, ତାହା ଧର୍ମ ଅଟେ । ଆଉ ଯଦି ପୂର୍ବକର୍ମ ଅନୁସାରେ ହୋଇଯାଏ ତେବେ ତାହାର ପ୍ରତିକ୍ରମଣ କରିବା, ଏହା ହିଁ ଧର୍ମ । ବାକି ଅନ୍ୟ କୌଣସି ଧର୍ମ ଭଳି କିଛି ନାହିଁ । ଏବଂ ଏହି ଦୁଇ ଆଇଟମ୍ ଏସବୁ ଲୋକେ ବାହାର କରିଦେଇଛନ୍ତି ! !

ଯଦି ତୁମେ କାହାକୁ ଓଲଟା କହିଲ ତେବେ ତୁମକୁ ପ୍ରତିକ୍ରମଣ କରିବାକୁ ପଡ଼ିବ, କିନ୍ତୁ ସେମାନଙ୍କୁ ବି ତୁମର ପ୍ରତିକ୍ରମଣ କରିବାକୁ ପଡ଼ିବ । ତାଙ୍କୁ କ'ଣ ପ୍ରତିକ୍ରମଣ କରିବା ଉଚିତ ଯେ 'ମୁଁ କେବେ ଭୁଲ କରିଥିବି ଯେ ୟାଙ୍କୁ ମୋତେ ଗାଳି ଦେବାର ସମୟ ଆସିଲା ?' ଅର୍ଥାତ ତାଙ୍କୁ ନିଜ ଭୁଲର ପ୍ରତିକ୍ରମଣ କରିବାକୁ ପଡ଼ିବ । ତାଙ୍କୁ ନିଜର ପୂର୍ବଜନ୍ମର ପ୍ରତିକ୍ରମଣ କରିବାକୁ ପଡ଼ିବ ଏବଂ ତୁମକୁ ତୁମର ଏହି ଜନ୍ମର ପ୍ରତିକ୍ରମଣ କରିବାକୁ ପଡ଼ିବ ! ଏହିପରି ପ୍ରତିଦିନ ପାଞ୍ଚଶହ-ପାଞ୍ଚଶହ ପ୍ରତିକ୍ରମଣ କରିବା ତେବେ ମୋକ୍ଷରେ ଯାଇପାରିବା !

ଯଦି କେବଳ ଏତିକି ହିଁ କରିବ ନା, ତେବେ ଅନ୍ୟ କୌଣସି ଧର୍ମ ନ ଖୋଜିବ ତେବେ ମଧ୍ୟ ଅସୁବିଧା ନାହିଁ । ଏତିକି ପାଳନ କରିବ ତେବେ ବହୁତ ହୋଇଗଲା, ଏବଂ ମୁଁ ତୋତେ ଗ୍ୟାରେଣ୍ଟି ଦେଉଛି, ତୋ ମୁଣ୍ଡରେ ହାତ ରଖି ଦେଉଛି । ମୋକ୍ଷ ପାଇଁ ଶେଷ ପର୍ଯ୍ୟନ୍ତ ମୁଁ ତୋତେ ସହଯୋଗ ଦେବି ! ତୋର ପ୍ରସ୍ତୁତି ଦରକାର । ଯଦି ଗୋଟିଏ ହିଁ ଶବ୍ଦ ପାଳନ କରିବ ତେବେ ବହୁତ ହୋଇଗଲା !

## ୫. ଅକ୍ରମ ବିଜ୍ଞାନର ରୀତି

ଅକ୍ରମ ଆମକୁ କ'ଣ କହେ ? ଯଦି କାହାକୁ ପଚାରିବା ଯେ, 'ତୁ ଅନେକ

ଦିନରୁ ଚୋରି କରୁଛୁ ?' ତେବେ ସେ କହିବ, 'ହଁ ।' ପ୍ରେମରେ ପଚାରିବା ତେବେ ସବୁ କହିବ । 'କେତେ ବର୍ଷ ହେଲାଣି କରୁଛୁ ?' ତେବେ ସେ କହିବ, 'ବର୍ଷେ-ଦୁଇବର୍ଷ ହେଲାଣି କରୁଛି ।' ପରେ ମୁଁ କୁହେ, 'ଚୋରି କରୁଛୁ, ସେଥିରେ ଅସୁବିଧା ନାହିଁ, କିନ୍ତୁ ପ୍ରତିକ୍ରମଣ କରିବୁ ଏତିକି ।' ତା' ମୁଣ୍ଡରେ ହାତ ବୁଲେଇ ଦିଏ ।

ଯିଏ ପ୍ରତିକ୍ରମଣ କଲା, ତା'ର ସବୁ ଚୋରି ଖତମ ହୋଇଗଲା । ଅଭିପ୍ରାୟ ବଦଳିଗଲା । ସେ ଏ ଯେଉଁ କରୁଅଛି, ସେଥିରେ ନିଜର ଅଭିପ୍ରାୟ ଏକ୍ସେପ୍ଟ କରେ ନାହିଁ । ନଟ୍ ହିଜ୍ ଓପିନିୟନ୍ !

ଦାଦାଙ୍କ ନାମନେଇ ପୁଣି ପଶ୍ଚାତାପ କରିବୁ, 'ଏବେ ଆଉ କରିବି ନାହିଁ, ଚୋରି କଲି, ତାହା ଭୁଲ କଲି ଏବଂ ଏବେ ଆଉ ଏପରି କରିବି ନାହିଁ', ଏପରି ତା'କୁ ଶିଖାଏ !

ଏପରି ତା'କୁ ଶିଖାଇବା ପରେ, ପୁଣି ତା' ମା-ବାପା କ'ଣ କହନ୍ତି, 'ପୁଣି ଚୋରି କଲୁ ଆଉଥରେ ?' ପୁଣି ଯଦି ଚୋରି କରେ ତେବେ ମଧ୍ୟ ଏହିପରି କହିବ । ଏପରି କହିବା ଦ୍ୱାରା କ'ଣ ହୁଏ, ତାହା ମୁଁ ଜାଣିଛି । ଅନ୍ୟ କୌଣସି ଚାରା ନାହିଁ ।

ଅର୍ଥାତ ଏହି ଅକ୍ରମ ବିଜ୍ଞାନ ଏପରି ଶିଖାଏ ଯେ ଏ ଯେଉଁ ବିଗିଡ଼ି ଯାଇଛି, ସେ ସୁଧୁରିବାର ନାହିଁ, କିନ୍ତୁ ଏହି ରୀତିରେ ତା'କୁ ସୁଧାର ।

ସବୁ ଧର୍ମ କହନ୍ତି ଯେ, 'ତୁମେ ତପର କର୍ତ୍ତା ଅଟ, ତ୍ୟାଗର କର୍ତ୍ତା ଅଟ । ତୁମେ ହିଁ ତ୍ୟାଗ କରୁଛ । ତୁମେ ତ୍ୟାଗ କରୁନାହଁ ।' 'କରୁନାହିଁ' କହିବା ତାହା ମଧ୍ୟ 'କରୁଛି', କହିବା ସହ ସମାନ ଅଟେ । ଏହିପରି କର୍ତ୍ତାପଣକୁ ସ୍ୱୀକାର କରନ୍ତି । ଏବଂ କହିବେ, 'ମୋ ଦ୍ୱାରା ତ୍ୟାଗ ହେଉନାହିଁ' ତାହା ମଧ୍ୟ କର୍ତ୍ତାପଣ ଅଟେ । ହଁ ! ଆଉ କର୍ତ୍ତାପଣକୁ ସ୍ୱୀକାର କରନ୍ତି, ସେ ସବୁ ଦେହାଧ୍ୟାସୀ ମାର୍ଗ ଅଟେ । ମୁଁ କର୍ତ୍ତାପଣକୁ ସ୍ୱୀକାର ହିଁ କରେ ନାହିଁ । ଆମ ପୁସ୍ତକରେ କେଉଁଠି ବି 'ଏପରି କର' ଏଭଳି ଲେଖା ନଥାଏ ।

ଅର୍ଥାତ ଯାହା କରିବା କଥା ତାହା ରହିଗଲା ଏବଂ 'ନ କରିବା କଥା' ତାହା କରାଉଛନ୍ତି । ପୁଣି 'ନ କରିବା କଥା', ତାହା ହୁଏ ବି ନାହିଁ । ହେବ ବି ନାହିଁ ଏବଂ ବିନା କାରଣରେ ସେଥିରେ ୱେଷ୍ଟ ଅଫ୍ ଟାଇମ୍ ଏଣ୍ଡ ଏନର୍ଜି (ସମୟ ଏବଂ ଶକ୍ତିର ଅପବ୍ୟୟ) । କ'ଣ କରିବାର ଅଛି? ଏ ଅଲଗା ଜିନିଷ କରିବାର ଅଛି । ଯାହା କରିବାର ଅଛି, ତାହା ତ ତୁମକୁ ଶକ୍ତି ମାଗିବାର ଅଛି । ଏବଂ ପୂର୍ବରୁ ଯେଉଁ ଶକ୍ତି ମାଗିଛେ, ତାହା ଏବେ ହେଉଅଛି ।

**ପ୍ରଶ୍ନକର୍ତ୍ତା :** ପୂର୍ବର ହିଁ ତ ଇଫେକ୍ଟରେ ଆସିଛି ।

**ଦାଦାଶ୍ରୀ :** ହଁ । ଇଫେକ୍ଟରେ ଆସିଛି । ଅର୍ଥାତ କଜେଜ୍ ରୂପରେ ତୁମକୁ ଶକ୍ତି ମାଗିବାର ଅଛି । ମୁଁ ନଅ କଲମରେ ଶକ୍ତି ମାଗିବାକୁ କହିଛି, ଏପରି ଶହେ-ଦୁଇଶହ କଲମ ଲେଖିବା ତେବେ ସବୁ ଶାସ୍ତ୍ର ଆସିଯିବ ସେଥିରେ । ଏତିକି ହିଁ କରିବାର ଅଛି । ଦୁନିଆରେ କେତେ କରିବାର ଅଛି ? ଏତିକି ହିଁ । କର୍ତ୍ତାଭାବରେ ଯଦି କିଛି କରିବାର ଅଛି ତେବେ କେବଳ ଶକ୍ତି ମାଗିବାର ଅଛି ।

**ପ୍ରଶ୍ନକର୍ତ୍ତା :** ସେ ଶକ୍ତି ମାଗିବାର କଥା ନା ?

**ଦାଦାଶ୍ରୀ :** ହଁ । କାରଣ ମୋକ୍ଷରେ କ'ଣ ସମସ୍ତେ ଯାଉଛନ୍ତି ?! କିନ୍ତୁ କର୍ତ୍ତାଭାବରେ କରିବାର ଥିବ ତେବେ ଏତିକି କରିବ, ଶକ୍ତି ମାଗିବ । କର୍ତ୍ତାଭାବରେ ଶକ୍ତି ମାଗିବ, ଏପରି କହୁଛି ।

**ପ୍ରଶ୍ନକର୍ତ୍ତା :** ଅର୍ଥାତ ଯିଏ ଜ୍ଞାନ ନେଇନାହାନ୍ତି, ସେମାନଙ୍କ ପାଇଁ ଏହି କଥା ?

**ଦାଦାଶ୍ରୀ :** ହଁ । ଯିଏ ଜ୍ଞାନ ନେଇନାହାନ୍ତି । ଜଗତର ଲୋକଙ୍କ ପାଇଁ । ନହେଲେ ଏବେ ଯେଉଁ ରାସ୍ତାରେ ଲୋକେ ଚାଲୁଛନ୍ତି ନା, ତାହା ବିଲକୁଲ ଓଲଟା ରାସ୍ତା ଅଟେ । ସେଥିରେ କୌଣସି ବି ମଣିଷ ନିଜର ହିତ ଆଦୌ ପ୍ରାପ୍ତ କରିପାରିବ ନାହିଁ ।

'କରିବାର ଅଛି କିନ୍ତୁ ହେଉ ନାହିଁ' ଉଦୟ (କର୍ମର) ଓଲଟା ଆସିଯାଏ ତେବେ କ'ଣ କରିହେବ ? ଭଗବାନ ତ ଏପରି କହିଥିଲେ ଯେ 'ସ୍ୱରୂପରେ ରହି ଉଦୟକୁ ଜାଣ ।' କରିବାକୁ କହି ନଥିଲେ । 'ଏହାକୁ ଜାଣ' ଏତିକି ହିଁ କହିଥିଲେ । ତାହା ବଦଳରେ 'ଏହା କଲି କିନ୍ତୁ ହେଉ ନାହିଁ । କରୁଛୁ କିନ୍ତୁ ହୋଇପାରୁ ନାହିଁ । ବହୁତ ଇଚ୍ଛା ଅଛି କିନ୍ତୁ ହୋଇ ପାରୁନାହିଁ' କୁହନ୍ତି । ଆରେ, କିନ୍ତୁ ବେକାରଟାରେ ତାହାକୁ ଗାଇଚାଲିଛୁ କ'ଣ ପାଇଁ । 'ମୋ ଦ୍ୱାରା ହୋଇପାରୁ ନାହିଁ, ହୋଇପାରୁ ନାହିଁ ।' ଏପରି ଚିନ୍ତନ କରିଲେ ଆତ୍ମା କିଭଳି ହୋଇଯିବ ? ପଥର ହୋଇଯିବ । ଆଉ ସେ ତ କେବଳ କ୍ରିୟା ହିଁ କରିବାକୁ ଯାଏ ଏବଂ ସାଥୀରେ 'ହୋଇପାରୁ ନାହିଁ, ହୋଇ ପାରୁନାହିଁ, ହୋଇ ପାରୁନାହିଁ' କହେ ।

ମୁଁ ମନା କରୁଛି ଯେ ଏପରି କହିବା ଉଚିତ ନୁହେଁ । 'ହେଉନାହିଁ' ଏପରି ତ ଆଦୌ କହିବା ଉଚିତ ନୁହେଁ । ତୁ ତ ଅନନ୍ତ ଶକ୍ତିବାଲା ଅଟୁ, ମୁଁ ବୁଝାଇବା ପରେ

ତ 'ମୁଁ ଅନନ୍ତ ଶକ୍ତିବାଲା ଅଟେ' ଏପରି କହେ । ନହେଲେ ଏପର୍ଯ୍ୟନ୍ତ 'ହୋଇ ପାରୁନାହିଁ' ଏହିପରି କହୁଥିଲା ! କ'ଣ ଅନନ୍ତ ଶକ୍ତି ଚାଲିଯାଇଛି !

କାରଣ ମନୁଷ୍ୟ କିଛି କରିପାରିବ, ଏପରି ସମ୍ଭବ ନୁହେଁ । ମନୁଷ୍ୟର ସ୍ୱଭାବ କିଛି କରିପାରିବ ନାହିଁ । କରିବାବାଲା ପରସତ୍ତା ଅଟେ । ଏ ଜୀବ କେବଳ ଜାଣିବା ବାଲା ହିଁ ଅଟନ୍ତି । ଏଣୁ ତୁମକୁ କେବଳ ଜାଣିବାର ଅଛି ଆଉ ତୁମେ ଯଦି ଏହା ଜାଣିବ ତେବେ ଭୁଲ ଉପରେ ଯେଉଁ ଶ୍ରଦ୍ଧା ବସିଥିଲା, ତାହା ରହିବ ନାହିଁ । ଏବଂ ତୁମ ଅଭିପ୍ରାୟରେ ପରିବର୍ତ୍ତନ ହେବ । କ'ଣ ପରିବର୍ତ୍ତନ ହେବ ? ମିଛ କହିବା ଭଲ, ଏହି ଅଭିପ୍ରାୟ ଉଡ଼ିଯିବ । ଏହି ଅଭିପ୍ରାୟ ଉଡ଼ିଯାଏ, ତାହାପରି କୌଣସି ପୁରୁଷାର୍ଥ ନାହିଁ ଏ ଦୁନିଆରେ । ଏହା ସୂକ୍ଷ୍ମ କଥା ଅଟେ, କିନ୍ତୁ ଗଭୀରତାର ସହ ବିଚାର କରିବାକୁ ପଡ଼ିବ ।

**ପ୍ରଶ୍ନକର୍ତ୍ତା :** ନା, କିନ୍ତୁ କଥା ଲଜିକାଲ ଅଟେ ପୁରା ।

**ଦାଦାଶ୍ରୀ :** ଯଦି ପାଇଖାନା ଯିବା ବି ପରସତ୍ତାର ହାତରେ ଅଛି ତେବେ କରିବା ତୁମ ହାତରେ କିପରି ହୋଇପାରିବ ? କୌଣସି ମଣିଷ ଏପରି ନାହିଁ ଯାହା ହାତରେ କିଛି ବି କରିବାର ସତ୍ତା ଥିବ । ତୁମକୁ ଜାଣିବାର ଅଛି ଏବଂ *ନିଶ୍ଚୟ* କରିବାର ଅଛି, କେବଳ ଏତିକି ତୁମକୁ କରିବାର ଅଛି । ଯଦି ଏ କଥା ବୁଝା ପଡ଼ିଯାଏ, ତେବେ କାମ ହୋଇଯିବ । ଏବେ ଏତେ ସହଜରେ ବୁଝା ପଡ଼ିଯିବ, ଏପରି ନୁହେଁ । ତୁମକୁ ବୁଝାପଡ଼ିଲା ? କିଛି ବି କରିବା ଅପେକ୍ଷା ଜାଣିବା ଭଲ । କରିବା କ'ଣ ତୁରନ୍ତ ହୋଇପାରିବ ?

**ପ୍ରଶ୍ନକର୍ତ୍ତା :** ଆପଣ ଯାହା କହୁଛନ୍ତି, ତାହା ବୁଝା ପଡ଼ିଗଲା । କଥା ଠିକ ଅଟେ କିନ୍ତୁ ଏହା ବୁଝିବା ପରେ ମଧ୍ୟ କରିବାକୁ ତ ରହେ ନା ? ଯେପରି କରିବାର ସତ୍ତା ନାହିଁ ସେହିପରି ଜାଣିବାର ସତ୍ତା ବି ତ ନାହିଁ ନା ?

**ଦାଦାଶ୍ରୀ :** ନା, ଜାଣିବାର ସତ୍ତା ଅଛି । କରିବାର ସତ୍ତା ନାହିଁ । ଏହା ବହୁତ ସୂକ୍ଷ୍ମ କଥା ଅଟେ । ଯଦି ଏତିକି କଥା ବୁଝା ପଡ଼ିଗଲା ତେବେ ବହୁତ ହୋଇଗଲା ।

କେହି ଏକ ପିଲା ଚୋର ହୋଇଯାଇଛି । ସେ ଚୋରି କରେ । ମଉକା ମିଳିଲେ ଲୋକଙ୍କ ପଇସା ଚୋରେଇ ନିଏ । ଘରକୁ ଯଦି ଗେଷ୍ଟ ଆସିଥିବେ ତେବେ ସେମାନଙ୍କୁ ମଧ୍ୟ ଛାଡ଼େ ନାହିଁ ।

ଏବେ ସେ ପିଲାକୁ ମୁଁ କ'ଣ ଶିଖାଏ ? ଯେ ତୁ ଚୋରି ନ କରିବା ପାଇଁ ଦାଦା ଭଗବାନଙ୍କଠାରୁ ଶକ୍ତି ମାଗ, ଏହି ଜନ୍ମରେ ।

ଏବେ, ଏଥିରେ ତା'କୁ ଲାଭ କ'ଣ ହେଲା ? କେହି କହିବ, ଏଥିରେ କ'ଣ ଶିଖେଇଲ ? ସେ ତ ଶକ୍ତି ମାଗିଚାଲିଛି କିନ୍ତୁ ପୁଣି ଚୋରି ତ କରୁଛି । 'ଆରେ, ପଛେ ଚୋରି କରୁ, କିନ୍ତୁ ସେ ଶକ୍ତି ମାଗିଚାଲିଛି ନା ନାହିଁ?' ହଁ, ଶକ୍ତି ତ ମାଗିଚାଲିଛି । ତେବେ ମୁଁ ଜାଣିଛି ଯେ ଏ ଔଷଧ କି କାମ କରୁଛି । ତୁମକୁ କ'ଣ ଜଣାଅଛି ଯେ ଔଷଧ କି କାମ କରୁଛି !

**ପ୍ରଶ୍ନକର୍ତ୍ତା :** ସତକଥା । ଔଷଧ କି କାମ କରୁଛି, ତାହା ଜାଣିନାହୁଁ । ଆଉ ମାଗିବା ଦ୍ୱାରା ଲାଭ ହୁଏ କି ନାହିଁ, ଏହା ମଧ୍ୟ ବୁଝିନାହୁଁ ।

**ଦାଦାଶ୍ରୀ :** ତେବେ ଏହାର ଭାବାର୍ଥ କ'ଣ ଯେ ଏକରେ ତ ସେ ପିଲା ମାଗୁଛି ଯେ 'ମୋତେ ଚୋରି ନ କରିବାର ଶକ୍ତି ଦିଅନ୍ତୁ!' ଅର୍ଥାତ ପ୍ରଥମେ ତ ସେ ନିଜ ଅଭିପ୍ରାୟ ବଦଳାଇ ଦେଲା । 'ଚୋରି କରିବା ଭୁଲ ଏବଂ ଚୋରି ନକରିବା ଠିକ୍ ।' ଏପରି ଶକ୍ତି ମାଗେ । ଅର୍ଥାତ ଚୋରି କରିବା ଉଚିତ ନୁହେଁ ଏପରି ଅଭିପ୍ରାୟକୁ ଆସିଗଲା । ସବୁଠାରୁ ବଡ଼ ଏହା ଯେ ଅଭିପ୍ରାୟ ବଦଳି ଗଲା !

ଏବଂ ଯେବେଠୁ ଅଭିପ୍ରାୟ ବଦଳି ଗଲା, ସେବେଠୁ ସେ ଦୋଷୀ ହେବାରୁ ବଞ୍ଚିଗଲା ।

ଏବଂ ଆଉ କ'ଣ ହୁଏ ? ଭଗବାନଙ୍କ ଠାରୁ ଶକ୍ତି ମାଗେ, ଅତଃ ତା'ର ପରମ ବିନୟ ପ୍ରକଟ ହେଲା । 'ହେ ଭଗବାନ ! ଶକ୍ତି ଦିଅନ୍ତୁ ।' କହିଲ ତେବେ ସେ ତୁରନ୍ତ ଶକ୍ତି ଦେବେ । କୌଣସି ଚାରା ହିଁ ନାହିଁ ନା! ସମସ୍ତଙ୍କୁ ଦିଅନ୍ତି । ମାଗିବାବାଲା ଦରକାର । ସେଥିପାଇଁ କହୁଛି ଯେ ମାଗିଚାଲ । ତୁମେ ତ କିଛି ମାଗୁ ହିଁ ନାହଁ । କେବେ କିଛି ମାଗୁନାହଁ ।

ଶକ୍ତି ମାଗ, ଏହି କଥା ତୁମକୁ ବୁଝା ପଡ଼ିଲା ?

ଦାଦାଙ୍କଠୁ କ୍ଷମା ମାଗିବ, ସାଥେ ସାଥେ ଯେଉଁଥି ପାଇଁ କ୍ଷମା ମାଗୁଛ, ସେଥିପାଇଁ ମୋତେ ଶକ୍ତି ଦିଅନ୍ତୁ, ଦାଦା ଶକ୍ତି ଦିଅନ୍ତୁ । ଶକ୍ତି ମାଗି-ମାଗି ନେବ, ତୁମ ନିଜ ଶକ୍ତି ଖର୍ଚ୍ଚ କରିବ ନାହିଁ । ନହେଲେ ତୁମର ଶେଷ ହୋଇଯିବ । ଆଉ ମାଗି-ମାଗି ଖର୍ଚ୍ଚ କରିବ ତେବେ ଶେଷ ହେବନାହିଁ ଏବଂ ବଢ଼ିବ । ତୁମ ଦୋକାନରେ କେତେ ମାଲ୍ ଥିବ ?

ପ୍ରତ୍ୟେକ ବାବତରେ, 'ଦାଦା, ମୋତେ ଶକ୍ତି ଦିଅନ୍ତୁ ।' ପ୍ରତ୍ୟେକ ବାବତରେ ଶକ୍ତି ମାଗି ମାଗି ହିଁ ନେବ । ପ୍ରତିକ୍ରମଣ କରିବା ଭୁଲି ଯାଅ ତେବେ, 'ମୋତେ ଠିକ

ରୂପରେ ପ୍ରତିକ୍ରମଣ କରିବାର ଶକ୍ତି ଦିଅନ୍ତୁ ।' ସବୁ ଶକ୍ତି ମାଗିକରି ନେବ । ମୋ ପାଖରେ ତ ତୁମେ ମାଗି ମାଗି ଥକିଯିବ ଏତେ ଶକ୍ତି ଅଛି ।

## ୬. ରହେ ଫୁଲ, ଯାଏ କଣ୍ଟା...

ପ୍ରକୃତି କ୍ରମଣରୁ ସୃଷ୍ଟି ହୋଇଯାଇଛି, କିନ୍ତୁ ଅତିକ୍ରମଣରୁ ବଢ଼େ, ଶାଖା-ପ୍ରଶାଖା ସବୁକିଛି ! ଏବଂ ପ୍ରତିକ୍ରମଣ ଦ୍ୱାରା ଯେତିକି ବଢ଼ିଥାଏ ସବୁ କମ ହୋଇଯାଏ । ଏଣୁ ତା'କୁ ଜାଗୃତି ଆସେ ।

ଅର୍ଥାତ ମୁଁ କ'ଣ କହିବାକୁ ଚାହୁଁଛି ଯେ ଯଦି ତୁମେ କେଉଁ ଜାଗାକୁ ଦର୍ଶନ କରିବା ପାଇଁ ଯାଇଥିବ, ଏବଂ ସେଠି ଏପରି ଲାଗେ ଯେ ମୁଁ ଭାବିଥିଲି ହୋଇଥିବେ ଜ୍ଞାନୀ ଆଉ ଇଏ ତ ବାହାରିଲେ ଢୋଙ୍ଗୀ ! ଏବେ ତୁମେ ସେଠାକୁ ଗଲ ତାହା ତ ପ୍ରାରବ୍ଧର ଖେଳ ଅଟେ, ଆଉ ସେଠାରେ ତାଙ୍କ ପାଇଁ ମନରେ ଯେଉଁ ଖରାପ ଭାବ ହେଲା ଯେ 'ଆରେରେ, ଏଭଳି ଅଯୋଗ୍ୟଙ୍କ ପାଖକୁ କାହିଁକି ଆସିଲି ?' ସେହି ନେଗେଟିଭ୍ ପୁରୁଷାର୍ଥ ତୁମ ଭିତରେ ହୋଇଛି, ତାହାର ଫଳ ତୁମକୁ ଭୋଗିବାକୁ ପଡ଼ିବ । ତାଙ୍କୁ ଅଯୋଗ୍ୟ କହିବାର ଫଳ ତୁମକୁ ଭୋଗିବାକୁ ପଡ଼ିବ, ପାପ ଭୋଗିବାକୁ ପଡ଼ିବ । ଏବଂ ବିଚାର ଆସିବା ସ୍ୱାଭାବିକ ଅଟେ, କିନ୍ତୁ ତୁରନ୍ତ ଭିତରେ କ'ଣ କରିବା ଉଚିତ ପୁଣି? ନା, 'ଆରେରେ, ମୋତେ କ'ଣ ପାଇଁ ଏପରି ଦୋଷ କରିବା ଉଚିତ ?' ଏହିପରି ତୁରନ୍ତ, ଠିକ୍ ବିଚାର କରି, ତୁମକୁ ସଫା କରିଦେବା ଉଚିତ ।

ହଁ, ମହାବୀର ଭଗବାନଙ୍କୁ ସ୍ମରଣ କରି ଅଥବା କାହାକୁ ବି ସ୍ମରଣ କରି, ଦାଦା ଭଗବାନଙ୍କୁ ସ୍ମରଣ କରି ପ୍ରତିକ୍ରମଣ କରିନେବା ଉଚିତ ଯେ, 'ଆରେରେ ! ସେ ଯେମିତି ବି ହେଉ, ମୋ ହାତରେ କାହିଁକି ଓଲଟା ହେଲା ?' ଭଲକୁ ଭଲ କହିବାରେ ଦୋଷ ନାହିଁ, କିନ୍ତୁ ଭଲକୁ ଖରାପ କହିବାରେ ଦୋଷ ଅଛି ଏବଂ ଖରାପକୁ ଖରାପ କହିବାରେ ମଧ୍ୟ ବହୁତ ଦୋଷ ଅଛି । ଭୟଙ୍କର ଦୋଷ ! କାହିଁକିନା ସେ ନିଜେ ଖରାପ ନୁହେଁ, ତା' ପ୍ରାରବ୍ଧ ତାକୁ ଖରାପ ବନେଇଛି । ପ୍ରାରବ୍ଧ ମାନେ କ'ଣ ? ତା' ସଂଯୋଗ ତା'କୁ ଖରାପ ବନେଇଲା, ସେଥିରେ ତା'ର କ'ଣ ଦୋଷ ?

ଏପଟେ ସବୁ ସ୍ତ୍ରୀମାନେ ଯାଉଥିବେ, ସେତେବେଳେ କେହି ଆମକୁ କହେ ଯେ, 'ଦେଖ ସେ ବେଶ୍ୟା, ଏଠାକୁ ଆସିଛି, କେଉଁଠୁ ପଶି ଆସିଛି ?' ସେ ଏପରି କହିବ, ସେହି କାରଣରୁ ଆମେ ମଧ୍ୟ ତା'କୁ ବେଶ୍ୟା କହିଲେ, ତାହାର ଆମକୁ ଭୟଙ୍କର ଦୋଷ ଲାଗିବ । ସେ କୁହେ ଯେ 'ସଂଯୋଗବଶତଃ ମୋର ଏହି ଦଶା

ହୋଇଛି, ସେଥିରେ ତୁମେ ଏପରି ସବୁ ଦୋଷ କାହିଁକି ମୁଣ୍ଡକୁ ନେଉଛ ? ତୁମେ କାହିଁକି ଦୋଷ କରୁଛ ?' ମୁଁ ତ ମୋ ଫଳ ଭୋଗୁଛି, କିନ୍ତୁ ତୁମେ ପୁଣି ଦୋଷ କରୁଛ ? ସେ କ'ଣ ନିଜେ ନିଜେ ବେଶ୍ୟା ବନିଛି ? ସଂଯୋଗ ବନେଇଛି । କୌଣସି ଜୀବକୁ ଖରାପ ବନିବାର ଇଚ୍ଛା ହିଁ ହୁଏ ନାହିଁ । ସବୁ ସଂଯୋଗ ହିଁ କରାନ୍ତି ଏବଂ ପରେ ତାହାର ଅଭ୍ୟାସ ପଡ଼ିଯାଏ । ଆରମ୍ଭ ତ ସଂଯୋଗ କରାନ୍ତି ।

**ପ୍ରଶ୍ନକର୍ତ୍ତା :** ଯେଉଁମାନଙ୍କୁ ଜ୍ଞାନ ନାହିଁ, କ'ଣ ସେମାନେ କେବଳ କିଛି ପ୍ରକାରର ହିଁ ଦୋଷ ଦେଖିପାରିବେ ?

**ଦାଦାଶ୍ରୀ :** ତାହା କେବଳ ଏତିକି । ଦୋଷର କ୍ଷମା ମାଗିବା ଶିଖ, ସଂକ୍ଷେପରେ ଏହିପରି କହିଦେବ । ଯେଉଁ ଦୋଷ ତୁମକୁ ଦିଶୁଛି, ସେହି ଦୋଷର କ୍ଷମା ମାଗିବ ଆଉ ସେ ଦୋଷ ଠିକ ଅଟେ, ଏପରି କେବେ ବି କହିବ ନାହିଁ ନହେଲେ ଡବଲ ହୋଇଯିବ । ଭୁଲ କରିବା ପରେ କ୍ଷମା ମାଗିନିଅ ।

**ପ୍ରଶ୍ନକର୍ତ୍ତା :** ଯେଉଁମାନେ ଜ୍ଞାନ ନେଇନାହାନ୍ତି, ଯଦି ସେମାନଙ୍କୁ ନିଜ ଦୋଷ ଦିଶେ ତେବେ ସେମାନଙ୍କୁ କିଭଳି ପ୍ରତିକ୍ରମଣ କରିବା ଉଚିତ ?

**ଦାଦାଶ୍ରୀ :** ଜ୍ଞାନ ନେଇ ନଥିବେ, ତଥାପି ଏପରି କିଛି ଜାଗୃତ ଲୋକ ଥାଆନ୍ତି ଯେଉଁମାନେ ପ୍ରତିକ୍ରମଣକୁ ବୁଝନ୍ତି, ସେମାନେ ଏହା କରିବେ । ଅନ୍ୟ ଲୋକଙ୍କର କାମ ହିଁ ନୁହଁ ଏହା, କିନ୍ତୁ ଆମେ ପ୍ରତିକ୍ରମଣ ଶବ୍ଦର ଅର୍ଥ ତା'କୁ ପଶ୍ଚାତାପ କରିବା ପାଇଁ କହିବା ଉଚିତ ।

ପ୍ରତିକ୍ରମଣ କରିବା ଦ୍ୱାରା କ'ଣ ହୁଏ ନା, ଆତ୍ମା ତା'ର 'ରିଲେଟିଭ' ଉପରେ ଚାପ ପକାଏ । କାହିଁକିନା, ଅତିକ୍ରମଣ ମାନେ କ'ଣ ହେଲା ଯେ ରିଯଲ ଉପରେ ଚାପ ପକାଏ । ଯେଉଁ କର୍ମ ଅତିକ୍ରମଣ ଅଟେ, ଏବଂ ଏବେ ସେଥିରେ ଇଣ୍ଟରେଷ୍ଟ ଆସିଗଲା ତେବେ ପୁଣି ତାହାର ଦାଗ ରହିଯାଏ । ଏଣୁ ଯେପର୍ଯ୍ୟନ୍ତ ତୁମେ ଭୁଲକୁ ଭୁଲ ନବୁଝିବ, ସେପର୍ଯ୍ୟନ୍ତ ଦୋଷ ଅଟେ । ସେଥିପାଇଁ ପ୍ରତିକ୍ରମଣ କରାଇବାର ଆବଶ୍ୟକତା ଅଛି ।

**ପ୍ରଶ୍ନକର୍ତ୍ତା :** ମୋ ଦ୍ୱାରା ଅତିକ୍ରମଣ ହୋଇଗଲା ଏବଂ ମୁଁ ତାହାର ପ୍ରତିକ୍ରମଣ କରିନେଲି, କିନ୍ତୁ ଯଦି ସାମ୍ନାବାଲା ମୋତେ କ୍ଷମା ନ କରେ ତେବେ ?

**ଦାଦାଶ୍ରୀ :** ସାମ୍ନାବାଲାର ଦେଖିବାର ନାହିଁ । ତୁମକୁ କେହି କ୍ଷମା କରୁ ଅବା ନକରୁ, ତାହା ଦେଖିବାର ଆବଶ୍ୟକତା ନାହିଁ । ତୁମ ଭିତରୁ ଏ ଅତିକ୍ରମଣ ସ୍ୱଭାବ

ବାହାରି ଯିବା ଉଚିତ । ତୁମେ ଅତିକ୍ରମଣର ବିରୋଧୀ ଅଟ, ଏପରି ହୋଇଯିବା ଉଚିତ ।

**ପ୍ରଶ୍ନକର୍ତ୍ତା :** ଆଉ ସାମ୍ନାବାଲାକୁ ଦୁଃଖ ହୋଇଚାଲିଥିବ ତେବେ ?

**ଦାଦାଶ୍ରୀ :** ସାମ୍ନାବାଲାର ଏପରି କିଛି ଦେଖିବାର ନାହିଁ । ତୁମେ ଅତିକ୍ରମଣର ବିରୋଧୀ ଅଟ, ଏପରି ନିଶ୍ଚିତ ହୋଇଯିବା ଉଚିତ । ଅତିକ୍ରମଣ କରିବାର ଇଚ୍ଛା ତୁମର ନାହିଁ । ଏବେ ଯାହା ହୋଇଗଲା ତାହା ପାଇଁ ପଶ୍ଚାତାପ ହେଉଛି । ଏବଂ ଏବେ ତୁମକୁ ଆଉ ଏପରି କରିବାର ଇଚ୍ଛା ନାହିଁ ।

ପ୍ରତିକ୍ରମଣ ତ ଆମକୁ ସେ ଅଭିପ୍ରାୟକୁ ବାହାର କରିବା ପାଇଁ କରିବାର ଅଛି । ଆମେ ସେ ମତରେ ରହିଲେ ନାହିଁ, ଏହିପରି ବାହାର କରିବା ପାଇଁ କରିବାର ଅଛି । ଆମେ ଏହି ମତରୁ ବିରୁଦ୍ଧ ଅଟୁ ଏପରି ଦେଖାଇବା ପାଇଁ ପ୍ରତିକ୍ରମଣ କରିବାର ଅଛି । କ'ଣ ବୁଝିଲ ତୁମେ ?

**ପ୍ରଶ୍ନକର୍ତ୍ତା :** ଯଦି ତାହା *ନିକାଲୀ* ଅଟେ ତେବେ ପୁଣି ପ୍ରତିକ୍ରମଣ କାହିଁକି ?

**ଦାଦାଶ୍ରୀ :** ସବୁକିଛି *ନିକାଲୀ* ହିଁ ଅଟେ, କେବଳ ତାହା ନୁହେଁ, ସବୁକିଛି *ନିକାଲୀ* ଅଟେ । ପ୍ରତିକ୍ରମଣ ତ ଯେତିକି ଅତିକ୍ରମଣ ହେଉଛି, କେବଳ ସେତିକି ପ୍ରତିକ୍ରମଣ କରିବାର ଅଛି, ଅନ୍ୟ କିଛି ନୁହେଁ । ଯଦି ପ୍ରତିକ୍ରମଣ ନକରିବା ତେବେ ଆମର ସ୍ୱଭାବ ବଦଳିବ ନାହିଁ, ସେମିତିକୁ ସେମିତି ହିଁ ରହିବ ! ତୁମକୁ ବୁଝା ପଡ଼ିଲା ନା ନାହିଁ ?

ନଚେତ ବିରୋଧୀ ରୂପରେ ଯଦି ଜାହିର ନହେବ ତେବେ ପୁଣି ସେ ମତ ତୁମ ପାଖରେ ରହିବ । ଯଦି ରାଗିଗଲେ ତେବେ ଆମେ ରାଗ ପକ୍ଷରେ ନାହୁଁ, ସେଥିପାଇଁ ପ୍ରତିକ୍ରମଣ କରିବାର ଅଛି । ନହେଲେ ରାଗ ପକ୍ଷରେ ଅଛେ, ଏପରି ନିଶ୍ଚିତ ହୋଇଯିବ । ଆଉ ଯଦି ପ୍ରତିକ୍ରମଣ କରିବ ତେବେ ଆମକୁ ରାଗ ଭଲ ଲାଗୁନାହିଁ, ଏପରି ଜାହିର ହେଲା କୁହାଯିବ । ଅର୍ଥାତ ସେଥିରୁ ଆମେ ଅଲଗା ହୋଇଗଲେ, ଆମେ ମୁକ୍ତ ହୋଇଗଲେ, ଉତ୍ତରଦାୟିତ୍ୱ କମିଗଲା । ଆମେ ତାହାର ବିରୋଧୀ ଅଟୁ, ଏପରି ଦେଖାଇବା ପାଇଁ କିଛି ସାଧନ ତ ଥିବା ଉଚିତ ନା ? ଆମ ଭିତରେ ରାଗ ରଖିବାର ଅଛି ନା କାଢ଼ି ଦେବାର ଅଛି ?

**ପ୍ରଶ୍ନକର୍ତ୍ତା :** ତାହା ତ କାଢ଼ି ଦେବାର ଅଛି ।

**ଦାଦାଶ୍ରୀ :** ଯଦି କାଢ଼ି ଦେବାର ଥିବ ତେବେ ପ୍ରତିକ୍ରମଣ କର । ତେବେ

ପୁଣି ଆମେ ରାଗର ବିରୋଧୀ ବୋଲି ବୁଝେଇବ, ନହେଲେ ଯଦି ପ୍ରତିକ୍ରମଣ ନ କରିବା ରାଗରେ ସହମତି ବୁଝାଯିବ ।

ପ୍ରତିକ୍ରମଣ କାହାକୁ କହିବା ଯେ ହାଲୁକା ହୋଇଯିବା, ହାଲୁକା ଅନୁଭବ ହେବ, ପୁଣିଥରେ ସେହିପରି ଦୋଷ କରିବା ସମୟରେ ତା'କୁ ବହୁତ ଦୁଃଖ ଲାଗିବ । ଯେବେକି ଏମାନେ ତ ଦୋଷର ଗୁଣା କରୁଛନ୍ତି !!

ତୁମେ କିଛି ପ୍ରତିକ୍ରମଣ, ସଚ୍ଚା ପ୍ରତିକ୍ରମଣ ଦେଖିଛ, ଗୋଟିଏ ବି ଦୋଷ କମ ହୋଇଥିବ ଏପରି ?

**ପ୍ରଶ୍ନକର୍ତ୍ତା :** ନା, ଏହିଠାରେ ହିଁ ଦେଖିବାକୁ ମିଳିଲା ।

**ଦାଦାଶ୍ରୀ :** ଜ୍ଞାନ ପ୍ରାପ୍ତି ପରେ ଆମକୁ ଭିତରେ ଖବର ପଡ଼େ ଯେ ଏହା ଦୋଷ ହେଲା, ତେବେଯାଇ ପ୍ରତିକ୍ରମଣ ହେବ । ସେପର୍ଯ୍ୟନ୍ତ ପ୍ରତିକ୍ରମଣ ହୋଇପାରିବ ନାହିଁ ନା ! ଜ୍ଞାନପ୍ରାପ୍ତି ପରେ ଜାଗୃତି ରହିବ ଯେ, ଅତିକ୍ରମଣ ହେବା ମାତ୍ରେ ତୁରନ୍ତ ତୁମକୁ ଖବର ପଡ଼ିବ ଯେ ଏହା ଭୁଲ ହୋଇଗଲା ସେତେବେଳେ ତୁରନ୍ତ ପ୍ରତିକ୍ରମଣ କରିନେବ । ଅତଃ ତାଙ୍କ ନାମରେ ଠିକ ପଦ୍ଧତି ଅନୁସାରେ ପ୍ରତିକ୍ରମଣ ହୋଇଚାଲିବ । ଆଉ ପ୍ରତିକ୍ରମଣ ହୋଇଗଲା ଅର୍ଥାତ ଧୋଇଗଲା । ଧୋଇଗଲା ଅର୍ଥାତ ସାମ୍ନାବାଲାକୁ କ୍ଷତ (ବୈରୀଭାବ, ଶତୃତାଭାବ) ରହିବ ନାହିଁ ପୁଣି । ନହେଲେ ପୁଣି ଆମେ ଯେବେ ତା'କୁ ଭେଟିବା ତେବେ ସାମ୍ନାବାଲା ସହ ଭେଦ ପଡ଼ିଚାଲିବ ।

**ପ୍ରଶ୍ନକର୍ତ୍ତା :** ଆମ ପାପକର୍ମକୁ ଏବେ କିପରି ଧୋଇବୁ ?

**ଦାଦାଶ୍ରୀ :** ପାପକର୍ମର ତ ଯେତେ ଦାଗ ଲାଗିଛି ସେତେ ପ୍ରତିକ୍ରମଣ କରିବାର ଅଛି । ସେ ଦାଗ ଯଦି ଗାଢ଼ ହୋଇଥିବ ତେବେ ବାରମ୍ବାର ଧୋଇଚାଲିବ । ବାରମ୍ବାର  ଧୋଇଚାଲିବ ।

**ପ୍ରଶ୍ନକର୍ତ୍ତା :** ସେ ଦାଗ ଚାଲିଗଲା କି ନାହିଁ, ତାହା କିପରି ଖବର ପଡ଼ିବ ?

**ଦାଦାଶ୍ରୀ :** ତାହା ତ ଭିତରେ ମନ ସ୍ୱଚ୍ଛ ହୋଇଯିବ ନା, ତେବେ ଜଣା ପଡ଼ିବ । ଚେହେରାରେ ଆନନ୍ଦ ଖେଳିଯିବ । ତୁମକୁ ଜଣା ପଡୁନାହିଁ ଯେ ଦାଗ ଚାଲିଗଲା ବୋଲି ? କେମିତି ଜଣା ପଡୁନାହିଁ ? କ'ଣ ଅସୁବିଧା ହେଉଛି ? ଆଉ ଯଦି ସଫା ନ ହୁଏ ତେବେ ମଧ ଆମକୁ ଅସୁବିଧା ନାହିଁ । ତୁ ପ୍ରତିକ୍ରମଣ କରିଚାଲ । ତୁ ସାବୁନ ଘଷି ଚାଲ । ପାପକୁ ତୁ ଚିହ୍ନିଛୁ ? କ'ଣ ତୁ ପାପକୁ ଚିହ୍ନିଛୁ ?

**ପ୍ରଶ୍ନକର୍ତ୍ତା :** ଦାଦାଙ୍କ ଆଜ୍ଞାର ପାଳନ ନହେଲା ମାନେ ପାପ ।

**ଦାଦାଶ୍ରୀ :** ନା, ଏପରି ନୁହେଁ । ତାହାକୁ ପାପ କହନ୍ତି ନାହିଁ । ଯଦି ସାମ୍ନାବାଲାକୁ ଦୁଃଖ ହୋଇଗଲା ତେବେ ତାହା ପାପ । କୌଣସି ବି ଜୀବକୁ, ସେ ପୁଣି ମନୁଷ୍ୟ ହେଉ ଅବା ପଶୁପକ୍ଷୀ ହେଉ ଅବା ଗଛ ହେଉ । ଗଛରୁ ଯଦି ବିନା କାରଣରେ ଏମିତି ପତ୍ର ଛିଡ଼େଇ ଚାଲିବା ତେବେ ତା'କୁ ବି ଦୁଃଖ ହୁଏ, ଅତଃ ତାହା ପାପ କୁହାଯାଏ ।

ଆଉ ଯଦି ଆଜ୍ଞାର ପାଳନ ନହେଲା, ତାହାଦ୍ୱାରା ତ ତୁମକୁ କ୍ଷତି ହେବ । ତୁମକୁ ନିଜକୁ ହିଁ କ୍ଷତି ହେବ । ପାପକର୍ମ ତ ତାହାକୁ କୁହାଯାଏ ଯେ ଯେବେ କାହାକୁ ଦୁଃଖ ହୋଇଯାଏ । ଅର୍ଥାତ କିଞ୍ଚିତମାତ୍ର ଦୁଃଖ ନହେଉ ଏପରି ରହିବା ଉଚିତ ।

ଆମେ ପ୍ରତିକ୍ରମଣ କରିବା ତେବେ ବହୁତ ଭଲ । ଆମ କପଡ଼ା ସଫା ହୋଇଯିବ ନା ? ଆମ କପଡ଼ାରେ ମଇଳା କାହିଁକି ରହିବାକୁ ଦେବା ? ଦାଦା ଏପରି ରାସ୍ତା ଦେଖାଇଛନ୍ତି ତେବେ କାହିଁକି ସଫା ନ କରିଦେବା ? !

କାହାକୁ ଆମଦ୍ୱାରା ଯଦି କିଞ୍ଚିତମାତ୍ର ବି ଦୁଃଖ ହୋଇଯାଏ ତେବେ ବୁଝିବ ଯେ ଭୁଲ ଆମର । ଆମ ଭିତରର ପରିଣାମ ବିଚଳିତ ହୁଏ ଅର୍ଥାତ ଭୁଲ ଆମର ଅଟେ, ଏପରି ବୁଝିଯିବ । ସାମ୍ନାବାଲା ବ୍ୟକ୍ତି ଭୋଗୁଅଛି, ଏଣୁ ପ୍ରତ୍ୟକ୍ଷ ରୂପେ ତା'ର ଭୁଲ ତ ଅଛି କିନ୍ତୁ ଆମେ ନିମିତ୍ତ ହୋଇଗଲେ, ଆମେ ତା'କୁ ଗାଳିକଲେ ତେଣୁ ଆମର ମଧ୍ୟ ଭୁଲ । କାହିଁକି ଦାଦାଙ୍କୁ *ଭୋଗବଟା* (ସୁଖ-ଦୁଃଖର ପ୍ରଭାବ) ଆସୁନାହିଁ ? କାରଣ ତାଙ୍କର ଗୋଟିଏ ବି ଭୁଲ ରହିନାହିଁ । ଆମ ଭୁଲରୁ ସାମ୍ନାବାଲାକୁ କିଛି ବି ପ୍ରଭାବ(ଦୁଃଖ) ହୋଇଯାଏ, ଯଦି କିଛି ଉଧାରି ହୋଇଯାଏ ତେବେ ତୁରନ୍ତ ମନରେ କ୍ଷମାମାଗି ଜମା କରିନେବ । ଆମର ଭୁଲ ହୋଇଯାଏ ତେବେ ଉଧାର ହୁଏ କିନ୍ତୁ ତୁରନ୍ତ କ୍ୟାଶ-ନଗଦ ପ୍ରତିକ୍ରମଣ କରିନେବ । ଆଉ ଯଦି କାହା କାରଣରୁ ଆମଦ୍ୱାରା ଭୁଲ ହୋଇଯାଏ ତେବେ ମଧ୍ୟ ଆମେ ଆଲୋଚନା, ପ୍ରତିକ୍ରମଣ ଏବଂ ପ୍ରତ୍ୟାଖ୍ୟାନ କରିନେବା । ମନ-ବଚନ-କାୟାରୁ ପ୍ରତ୍ୟକ୍ଷ ଦାଦା ଭଗବାନଙ୍କ ସାକ୍ଷୀରେ କ୍ଷମା ମାଗିଚାଲିବା ।

**ପ୍ରଶ୍ନକର୍ତ୍ତା :** କ୍ରମିକର ପ୍ରତିକ୍ରମଣ କରୁଥିଲି, ସେତେବେଳେ ମୁଣ୍ଡରେ କିଛି ପଶୁ ନଥିଲା ଆଉ ଏବେ ଏହା କରୁଛି ତେବେ ହାଲକା ଫୁଲକା ଲାଗୁଛି ।

**ଦାଦାଶ୍ରୀ :** କିନ୍ତୁ ତାହା ତ ପ୍ରତିକ୍ରମଣ ହିଁ ନୁହେଁ! ସେସବୁ ତ ତୁମେ ଅବୁଝାମିରୁ ସୃଷ୍ଟି କରିଥିବା ପ୍ରତିକ୍ରମଣ ଅଟେ ! ପ୍ରତିକ୍ରମଣ ଅର୍ଥାତ ତୁରନ୍ତ ଦୋଷ କମ ହେବା ଦରକାର । ତାହା ପ୍ରତିକ୍ରମଣ କୁହାଯାଏ । ଆମେ ଓଲଟା ଯାଇଥିଲେ, ସେଠାରୁ ପଛକୁ ଫେରି ଆସିଲେ, ତାହାକୁ ପ୍ରତିକ୍ରମଣ କୁହାଯାଏ । ଏ ତ ପଛକୁ ବୁଲି ନାହାନ୍ତି

ଏବଂ ସେଇଠିକୁ ସେଇଠି ଅଛନ୍ତି ! ଓଲଟା ଆଗକୁ ବଢ଼ିଛନ୍ତି ସେଠାରୁ!!! ତେବେ ପୁଣି ତାହାକୁ ପ୍ରତିକ୍ରମଣ କହିବା ବା କିପରି ?

ଯେବେ ଯେବେ ଗଣ୍ଠି ପଡ଼ିବା (ବନ୍ଧନ ହେବା) ପରି ହୁଏ, ସେବେ-ସେବେ ଦାଦାଜୀ ଅବଶ୍ୟ ସ୍ମରଣ ଆସି ହିଁ ଯାଆନ୍ତି ଏବଂ ଗଣ୍ଠି ପଡ଼େ ନାହିଁ । ମୁଁ ତ କ'ଣ କହିବାକୁ ଚାହୁଁଛି ଯେ ଗଣ୍ଠି ପଡ଼ିବାକୁ ଦେବନାହିଁ, ଆଉ କେବେ ଯଦି ଗଣ୍ଠି ପଡ଼ିଯାଏ ତେବେ ପ୍ରତିକ୍ରମଣ କରିବ । ଏହା ତ 'ଗଣ୍ଠି' ଶବ୍ଦ ତୁରନ୍ତ ବୁଝା ପଡ଼ିଯାଏ । ଏ ଲୋକେ 'ସତ୍ୟ, ଦୟା, ଚୋରି କରନାହିଁ', ଏହା ଶୁଣି ଶୁଣି ତ ଥକି ଗଲେଣି ।

ଗଣ୍ଠି ରଖି ଶୋଇଯିବା ଉଚିତ ନୁହେଁ । ଗଣ୍ଠି ଭିତରେ ଛନ୍ଦିହୋଇ ପଡ଼ିଥିବ ତେବେ ସେ ଗଣ୍ଠିକୁ ନ ଫିଟାଇ ଶୋଇବା ଉଚିତ ନୁହେଁ । ଗଣ୍ଠିକୁ ଖୋଲିଦେବା ଉଚିତ । ଶେଷରେ ଯଦି କିଛି ସମାଧାନ ନ ବାହାରେ ତେବେ ଭଗବାନଙ୍କଠାରୁ କ୍ଷମା ମାଗି ଚାଲିବ ଯେ ଏ(ଭାଇ) ସହ ଗଣ୍ଠି ପଡ଼ିଯାଇଛି ସେଥିପାଇଁ ବାରମ୍ବାର କ୍ଷମା ମାଗୁଛି, ତାହାଦ୍ୱାରା ବି ସମାଧାନ ହୋଇଯିବ । କ୍ଷମା ହିଁ ସବୁଠୁ ବଡ଼ ଶସ୍ତ୍ର ଅଟେ । ନହେଲେ ଦୋଷ ତ ନିରନ୍ତର ହୋଇଚାଲିଥାଏ ।

ସାମ୍ନାବାଲାକୁ ଗାଳି କରୁଛ ତେବେ ତୁମକୁ ଏପରି ଖିଆଲ କାହିଁକି ଆସୁନାହିଁ ଯେ ତୁମକୁ କେହି ଗାଳି କରିବ ତେବେ କିପରି ଲାଗିବ ? ଏ ଖିଆଲ ରଖି ଗାଳି କର ।

ସାମ୍ନାବାଲାର ଖିଆଲ ରଖି ପ୍ରତ୍ୟେକ କାର୍ଯ୍ୟ କରିବା, ତାହା ମାନବ ଅହଂକାର କୁହାଯାଏ ଆଉ ନିଜର ଖିଆଲ ରଖି ପ୍ରତ୍ୟେକଙ୍କ ସହ ବ୍ୟବହାର କରିବା ଏବଂ ହଇରାଣ କରିବା, ତେବେ ତାହା କ'ଣ କୁହାଯାଏ ?

**ପ୍ରଶ୍ନକର୍ତ୍ତା :** ପାଶବ ଅହଂକାର ।

**ଦାଦାଶ୍ରୀ :** କେହି ଯଦି ଏପରି କହେ ଯେ, 'ତୋର ଭୁଲ' ତେବେ ଆମେ ବି କହିବା, 'ଚନ୍ଦୁଭାଇ, ତୁମର ଭୁଲ ହୋଇଥିବ ସେଥିପାଇଁ ସେ କହୁଥିବ ନା ? ନହେଲେ ଖାଲିରେ ଏମିତି କ'ଣ କେହି କହୁଥିବ ?' କାହିଁକିନା ଖାଲିରେ କେହି କହିବ ନାହିଁ, କିଛି ନା କିଛି ଭୁଲ ଥିବ ନିଶ୍ଚିତ । ଏଣୁ ଆମକୁ ତା'କୁ କହିବାରେ ଅସୁବିଧା କ'ଣ ? 'ଭାଇ, ତୁମର କିଛି ଭୁଲ ଥିବ ସେଥିପାଇଁ କହୁଥିବେ । ଏଣୁ କ୍ଷମା ମାଗିନିଅ ।' ଆଉ ଚନ୍ଦୁଭାଇ କାହାକୁ ଦୁଃଖ ଦେଉଥିବେ ତେବେ ଆମେ କହିବା ଯେ 'ପ୍ରତିକ୍ରମଣ କରିନିଅ । କାରଣ ଆମକୁ ମୋକ୍ଷରେ ଯିବାର ଅଛି । ଏବେ ମନଇଚ୍ଛା କିଛି ବି କରିବାକୁ ଯିବ ତେବେ ତାହା ଚଳିବ ନାହିଁ ।'

ଅନ୍ୟର ଦୋଷ ଦେଖିବାର ଅଧିକାର ହିଁ ନାହିଁ । ସେଥିପାଇଁ ସେହି ଦୋଷର କ୍ଷମା, ପ୍ରତିକ୍ରମଣ କରିବ । ପରଦୋଷ ଦେଖିବାର ଅଭ୍ୟାସ ତ ତା'ଙ୍କୁ ପ୍ରଥମରୁ ହିଁ ଥିଲା, ସେଥିରେ ନୂଆ କ'ଣ ? ସେ ଅଭ୍ୟାସ ଏକାଥରେ ଯିବ ନାହିଁ । ତାହା ତ ଏହି ପ୍ରତିକ୍ରମଣ ଦ୍ୱାରା ଧୀରେ ଧୀରେ ଯିବ । ଯେଉଁଠି ଦୋଷ ଦିଶିଲା ସେଠି ପ୍ରତିକ୍ରମଣ କର, ଶୁଟ୍ ଅନ୍ ସାଇଟ !

**ପ୍ରଶ୍ନକର୍ତ୍ତା :** ପ୍ରତିକ୍ରମଣ ଯେପରି ହେବା କଥା, ସେପରି ଏବେ ମଧ୍ୟ ହେଉନାହିଁ ।

**ଦାଦାଶ୍ରୀ :** କିଛି ବି କରିବାକୁ ଥିବ, ତେବେ ତାହାର *ନିଶ୍ଚୟ* କରିବାକୁ ପଡ଼େ ।

**ପ୍ରଶ୍ନକର୍ତ୍ତା :** *ନିଶ୍ଚୟ* କରିବା ଅର୍ଥାତ ସେଥିରେ କରିବାର ଅହଂକାର ଆସିଲା ନା ପୁଣି ? ତାହା କ'ଣ ? ଏହାକୁ ବୁଝାନ୍ତୁ ।

**ଦାଦାଶ୍ରୀ :** କହିବା ପାଇଁ ଅଟେ, କେବଳ କହିବା ପାଇଁ ।

**ପ୍ରଶ୍ନକର୍ତ୍ତା :** ମହାତ୍ମାମାନଙ୍କ ମଧ୍ୟରୁ ଅନେକ ଏପରି ବୁଝନ୍ତି ଯେ ଆମକୁ କିଛି ବି କରିବାର ନାହିଁ, *ନିଶ୍ଚୟ* ବି କରିବାର ନାହିଁ ।

**ଦାଦାଶ୍ରୀ :** ନା, ଯଦି ମୋତେ ପଚାରେ ତେବେ ମୁଁ ତା'ଙ୍କୁ କହିବି ଯେ ଏହି *ନିଶ୍ଚୟ* ଅର୍ଥାତ କ'ଣ ଯେ, ଡିସାଇଡେଡ଼ ରୂପରେ କରିବ । ଡିସାଇଡେଡ଼ ଅର୍ଥାତ କ'ଣ ? ଏହା ନୁହେଁ ଏବଂ ଏହା, ବାସ୍ । ଏପରି ନୁହେଁ, ଏପରି ହେବା ଉଚିତ ।

**ପ୍ରଶ୍ନକର୍ତ୍ତା :** ଯେବେ ଭିତରେ ଉତ୍ପାତ ହୋଇଯାଏ, ସେତେବେଳେ ଶୁଟ୍ ଅନ୍ ସାଇଟ୍ ତାହାର *ନିକାଲ* କରିବା ଯଦି ନ ଆସେ, କିନ୍ତୁ ସନ୍ଧ୍ୟାରେ ଦଶ-ବାରଘଣ୍ଟା ପରେ ଯଦି ବିଚାର ଆସେ ଯେ, ଏହା ସବୁ ଭୁଲ ହୋଇଗଲା ତେବେ କ'ଣ ତାହାର *ନିକାଲ୍* ହୋଇଯିବ ? ଡେରିରେ ହେବ ଯଦି ?

**ଦାଦାଶ୍ରୀ :** ହଁ, ଡେରିରେ ହେଉ ପଛେ କିନ୍ତୁ ତାହାର ପ୍ରତିକ୍ରମଣ କରିବା ଉଚିତ । ଭୁଲ ହୋଇଯିବା ପରେ ପ୍ରତିକ୍ରମଣ କରିବ ଯେ, 'ହେ ଦାଦା ଭଗବାନ ! ମୋ ଦ୍ୱାରା ଭୁଲ ହୋଇଗଲା । ଏବେ ଆଉ ପୁଣି କରିବି ନାହିଁ ।'

ତୁରନ୍ତ ନ ହୁଏ ତେବେ ଦୁଇଘଣ୍ଟା ପରେ କର । ଆରେ, ରାତିରେ କର, ରାତିରେ ମନେ ପକାଇ କର । କ'ଣ ରାତିରେ ମନେ ପକାଇ କରିହେବ ନାହିଁ ଯେ ଆଜି କାହା ସହ ଘର୍ଷଣରେ ଆସିଲେ ? ରାତିରେ ଏପରି ହୋଇପାରିବ ନାହିଁ ? ଆରେ,

ସପ୍ତାହ ଶେଷରେ କର । ଏକ ସପ୍ତାହ ପରେ ସବୁ ସାଥିରେ କର । ସପ୍ତାହରେ ଯେତେ ଅତିକ୍ରମଣ ହୋଇଥିବ, ସେ ସବୁକୁ ଏକା ସାଥିରେ ହିସାବ କର ।

**ପ୍ରଶ୍ନକର୍ତ୍ତା :** କିନ୍ତୁ ତାହା ତୁରନ୍ତ ହେବା ଉଚିତ ନା ?

**ଦାଦାଶ୍ରୀ :** ଯଦି ତୁରନ୍ତ ହୋଇଯାଏ ତେବେ ତାହାପରି ତ କିଛି କଥା ହିଁ ନାହିଁ । ଆମର ଏଠି ତ ସବୁ ଲୋକ ବହୁତ କିଛି 'ଶୁଟ୍ ଅନ୍ ସାଇଟ୍' ହିଁ କରୁଛନ୍ତି । ଦେଖିବା ମାତ୍ରେ ଠାଏ, ଦେଖିବା ମାତ୍ରେ ଠାଏ ।

**ପ୍ରଶ୍ନକର୍ତ୍ତା :** ମୁଁ ଯେବେ କେବେ ଦାଦାଙ୍କ ନାମ ନେଉଛି ଅବା ଆରତୀ କରୁଛି, ତେବେ ମଧ୍ୟ ମନ ଅନ୍ୟତ୍ର ଭଟକି ଚାଲିଥାଏ । ପୁଣି ଆରତୀରେ ଅଲଗା କିଛି ଗାଏ । ପୁଣି ଅଲଗା ପଂକ୍ତି ଗାଇ ଦିଏ । ପରେ ତନ୍ମୟାକର ହୋଇଯାଏ । ଯେଉଁ ବିଚାର ଆସେ, ସେଥିରେ ତନ୍ମୟାକର ହୋଇଯାଏ । ପୁଣି କିଛି ସମୟ ପରେ ଫେରିଆସେ ।

**ଦାଦାଶ୍ରୀ :** ସେହିଦିନ ପ୍ରତିକ୍ରମଣ କରିବ । ବିଚାର ଆସେ ତେବେ ସେଥିରେ ଅସୁବିଧା ନାହିଁ । ଯେବେ ବିଚାର ଆସେ, ତେବେ ଆମେ 'ଚନ୍ଦୁଭାଇ'କୁ ଅଲଗା ଦେଖିପାରିବା ଯେ ଚନ୍ଦୁଭାଇକୁ ବିଚାର ଆସୁଛି । ଯଦି ଏପରି ସବୁ ଦେଖିପାରିବା ତେବେ ଆମେ ଏବଂ ସେ, ଦୁହେଁ ଅଲଗା ଅଟନ୍ତି । କିନ୍ତୁ ସେହି ସମୟରେ ଟିକିଏ ଢିଲା ପଡ଼ିଯାନ୍ତି ।

**ପ୍ରଶ୍ନକର୍ତ୍ତା :** ସେହି ସମୟରେ ଜାଗୃତି ହିଁ ରହେ ନାହିଁ ।

**ଦାଦାଶ୍ରୀ :** ତେବେ ତାହାର ପ୍ରତିକ୍ରମଣ କରିନେବ ଯେ ଏହି ଜାଗୃତି ରହିଲା ନାହିଁ, ସେଥିପାଇଁ ପ୍ରତିକ୍ରମଣ କରୁଛି । ହେ ଦାଦା ଭଗବାନ ! କ୍ଷମା କରିବ ।

**ପ୍ରଶ୍ନକର୍ତ୍ତା :** ପ୍ରତିକ୍ରମଣ କରିବା ବହୁତ ଡେରିରେ ମନେ ପଡ଼େ ଯେ, ଏହି ବ୍ୟକ୍ତିର ପ୍ରତିକ୍ରମଣ କରିବାର ଥିଲା ।

**ଦାଦାଶ୍ରୀ :** କିନ୍ତୁ ମନେ ତ ପଡୁଛି ନା ? ସତ୍ସଙ୍ଗରେ ଆହୁରି ଅଧିକ ବସିବାର ଆବଶ୍ୟକତା ଅଛି । ସୂକ୍ଷ୍ମତାର ସହ ସବୁକିଛି ପଚାରି ନେବା ଉଚିତ । ଏହା ତ ବିଜ୍ଞାନ ଅଟେ । ସବୁକିଛି ପଚାରି ନେବାର ଆବଶ୍ୟକତା ଅଛି ।

ଦୋଷ ଦେଖାଯିବା କିଛି ସହଜ କଥା ନୁହେଁ ! ପୁଣି ମୁଁ ତ ଏକଦମ୍ ଅନାବୃତ କରିଦିଏ, କିନ୍ତୁ ଯଦି ତା'ର ଦୃଷ୍ଟି ଥିବ ଯେ ମୋତେ ଦେଖିବାର ଅଛି ତେବେ ଦିଶି ଚାଲିବ । ଅର୍ଥାତ ନିଜକୁ ଖାଇବାର ଥାଳିରେ ହାତ ଉପରକୁ ତ କରିବାକୁ ପଡ଼ିବ ନା ?

ଏମିତିରେ କ'ଣ ଖାଇବା ପାଟିକୁ ଚାଲିଯିବ ! ! ଏପରି ଇଚ୍ଛା ରଖିଲେ କିପରି ଚଳିବ ? ପ୍ରୟାସ ତ କରିବା ଉଚିତ ନା !

ମଣିଷ ଦ୍ୱାରା ଦୋଷ ହେବା ସ୍ୱାଭାବିକ ଅଟେ । ସେଥିରୁ ବିମୁକ୍ତ ହେବାର ରାସ୍ତା କ'ଣ ? କେବଳ 'ଜ୍ଞାନୀପୁରୁଷ' ହିଁ ସେ ରାସ୍ତା ଦେଖାନ୍ତି, 'ପ୍ରତିକ୍ରମଣ' ।

ଭିତରେ ଆପେ ଆପେ ପ୍ରତିକ୍ରମଣ ହୋଇଚାଲେ । ଲୋକେ କୁହନ୍ତି, 'ଆପେ ଆପେ ପ୍ରତିକ୍ରମଣ ହୋଇଯାଏ ?' ମୁଁ କହିଲି, 'ହଁ, ତେବେ କିଭଳି ମେଶିନ ମୁଁ ଲଗାଇ ଦେଇଥିବି ? ଯାହାଦ୍ୱାରା ପ୍ରତିକ୍ରମଣ ଆରମ୍ଭ ହୋଇଯାଏ ।' ଯେପର୍ଯ୍ୟନ୍ତ ତୋ ଉଦ୍ଦେଶ୍ୟ ଠିକ ଅଛି, ସେପର୍ଯ୍ୟନ୍ତ ସବୁ ପ୍ରସ୍ତୁତ ରହେ ।

**ପ୍ରଶ୍ନକର୍ତ୍ତା :** ଏହା ସତ୍ୟ ଅଟେ ଦାଦାଜୀ, ପ୍ରତିକ୍ରମଣ ସହଜ ରୂପରେ ହୋଇ ଚାଲିଥାଏ ଆଉ ଅନ୍ୟଟି, ଏ ବିଜ୍ଞାନ ଏପରି ଅଟେ ଯେ ତିଳେମାତ୍ର ବି ଦ୍ୱେଷ ହୁଏ ନାହିଁ ।

**ପ୍ରଶ୍ନକର୍ତ୍ତା :** ଏ ଭାଇ କହନ୍ତି ଯେ ମୋ ଭଳିଙ୍କ ଦ୍ୱାରା ପ୍ରତିକ୍ରମଣ ହୋଇପାରେ ନାହିଁ, ତାହା କ'ଣ କୁହାଯିବ ?

**ଦାଦାଶ୍ରୀ :** ତାହା ତ ଭିତରେ ହୋଇଯାଉଥିବ କିନ୍ତୁ ଧ୍ୟାନ ରହୁନାହିଁ । ଅତଃ ଯଦି କେବଳ ଥରେ କହିଲ ଯେ 'ମୋ ଦ୍ୱାରା ହେଉନାହିଁ', ତେବେ ପୁଣି ବନ୍ଦ ହୋଇଯିବ । ସେ ମେଶିନ ବନ୍ଦ ହୋଇଯିବ । ଯେପରି ଭଜନା ସେପରି ଭକ୍ତି । ତାହା ତ ଭିତରେ ହୋଇଚାଲିଥାଏ । କିଛି ସମୟ ପରେ ହେବ ।

**ପ୍ରଶ୍ନକର୍ତ୍ତା :** ମୋ ଦ୍ୱାରା କାହାକୁ ଯଦି ଦୁଃଖ ହୋଇଯାଏ ତେବେ ତାହା ମୋତେ ଭଲ ଲାଗେ ନାହିଁ । ବାସ୍ କେବଳ ଏତିକି ରହେ । ପୁଣି ଆଗକୁ ବଢ଼େ ନାହିଁ, ପ୍ରତିକ୍ରମଣ ଭଳି ହେଉନାହିଁ ।

**ଦାଦାଶ୍ରୀ :** ତାହା ତ ଭିତରେ ଏପରି ମେଶିନ ରଖି ଦେଇଛି, ଆମେ ଯେପରି କହିବା, ସେପରି ସେ ଚାଲିବ ! ଯେପରି ଭଜିବ ସେହିପରି ହୋଇଯିବ । ତୁମେ ଯଦି କହିବ ଯେ, 'ମୋ ଦ୍ୱାରା ଏପରି ହୋଇପାରୁନାହିଁ' ତେବେ ସେହିପରି ହେବ । ତୁମେ ଯଦି କହିବ, 'ଏତେ ସାରା ପ୍ରତିକ୍ରମଣ ହେଉଛି ଯେ ମୁଁ ଥକି ଯାଉଛି ।' ତେବେ ଭିତରେ ସେ ଥକି ଯିବ । ଅତଃ ପ୍ରତିକ୍ରମଣ କରିବାବାଲା କରୁଅଛି, ତୁ ମାଡ଼ିଚାଲ ନା ଆଗକୁ । ପାଞ୍ଚଶହ-ପାଞ୍ଚଶହ ପ୍ରତିକ୍ରମଣ ହୋଇଚାଲିଥାଏ । ତୁ କହିଚାଲ ଯେ 'ମୋ ଦ୍ୱାରା ପ୍ରତିକ୍ରମଣ ହେଉଛି ।'

ଯଥା ସମ୍ଭବ 'ଶୁଟ ଅନ୍ ସାଇଟ୍' ରଖିବା ଉଚିତ । ଦୋଷ ହେବାମାତ୍ରେ ତୁରନ୍ତ ପ୍ରତିକ୍ରମଣ କରିବା ଉଚିତ । ଆଉ ଯଦି ନ କରିପାର ତେବେ ସନ୍ଧ୍ୟାରେ ଏକାସାଥିରେ କରିନେବ । କିନ୍ତୁ ଏକାସାଥିରେ କଲେ ଦୁଇ-ଚାରି ରହିଯିବ । ତାହାକୁ କେଉଁଠି ରଖିବା ?! ଏବଂ କିଏ ରଖିବ ତାହାକୁ ? ଆମର ତ 'ଶୁଟ୍ ଅନ୍ ସାଇଟ୍' ର ଧନ୍ଦା !

ଯେବେଠୁ ଦୋଷ ଦିଶିବାକୁ ଲାଗିଲା, ସେବେଠୁ ବୁଝିନେବ ଯେ ମୋକ୍ଷରେ ଯିବାର ଟିକଟ ମିଳିଗଲା । ନିଜ ଦୋଷ କାହାରିକୁ ଦେଖାଯାଏ ନାହିଁ । ବଡ଼ ବଡ଼ ସାଧୁ-ଆଚାର୍ଯ୍ୟମାନଙ୍କୁ ମଧ୍ୟ ନିଜ ଦୋଷ ଦେଖାଯାଏ ନାହିଁ । ମୂଳତଃ ସବୁଠାରୁ ବଡ଼ ଦୁର୍ବଳତା ଅଟେ ଏହା । ଆଉ ଏହି ବିଜ୍ଞାନ ଏପରି ଅଟେ ଯେ, ଏହି ବିଜ୍ଞାନ ହିଁ ତୁମକୁ ନିଷ୍ପକ୍ଷପାତି ରୂପେ ଜଜ୍‌ମେଣ୍ଟ ଦିଏ । ନିଜର ସବୁଦୋଷ ବତାଇ ଦିଏ । ପଛେ ଦୋଷ ହୋଇସାରିବା ପରେ ବତାଏ, କିନ୍ତୁ ବତାଇ ଦିଏ ନା ? ଏବେ ଦୋଷ ହୋଇଗଲା ତାହା ହୋଇଗଲା !! ତାହା ତ ଅଲଗା, ଗାଡ଼ିର ସ୍ପିଡ଼୍ ଅଧିକ ଥିବ ତେବେ ଚଢ଼ିଯାଏ ନା ? କିନ୍ତୁ ପୁଣି ଜଣା ପଡ଼ିଲା ନା ?

## ୭. ଶୁଦ୍ଧ ହୋଇଯିବ, ବ୍ୟାପାର

**ପ୍ରଶ୍ନକର୍ତ୍ତା :** ଏହିପରି ଯଦି ଚନ୍ଦୁଭାଇକୁ ଖୋଲା ଛାଡ଼ିଦେବୁ ତେବେ ସେ ତ କିଛି ବି କରିପାରେ ।

**ଦାଦାଶ୍ରୀ :** ନା । ସେଥିପାଇଁ ମୁଁ ବ୍ୟବସ୍ଥିତ କହିଛି ଯେ ଏହି ଗୋଟିଏ ଜନ୍ମରେ ଗୋଟିଏ ବାଳ ଯେତିକି ବି ବଦଳାଇବାର ଅଧିକାର ନାହିଁ 'ୱନ୍ ଲାଇଫ୍' ପାଇଁ !! ଯେଉଁ ଲାଇଫ୍‌ରେ ମୁଁ ବ୍ୟବସ୍ଥିତ ଦିଏ, ସେହି ବ୍ୟବସ୍ଥିତରେ ପରିବର୍ତ୍ତନ ହୋଇପାରିବ, ଏପରି ନୁହେଁ । ସେଥିପାଇଁ ତ ମୁଁ ତୁମକୁ ଖୋଲା ଛାଡ଼ିଦିଏ । ଅର୍ଥାତ ଏହା ମୁଁ ଦେଖିକରି କହୁଅଛି । ଏବଂ ସେଥିପାଇଁ ମୋତେ ଗାଳି କରିବାକୁ ବି ପଡ଼େ ନାହିଁ, ଯେ ଘରବାଲୀ ସହ କାହିଁକି ବୁଲୁଥିଲ ? ଅଥବା କାହିଁକି ଏମିତି, ସେମିତି ?! ମୋତେ ବିଲକୁଲ ବି ଗାଳି କରିବାକୁ ପଡ଼େ ନାହିଁ । ଆଗାମୀ ଲାଇଫ ପାଇଁ ନୁହେଁ, କିନ୍ତୁ ଏହି ଗୋଟିଏ ଲାଇଫ୍ ପାଇଁ ୟୁ ଆର ନଟ୍ ରିସ୍ପନ୍ସିବଲ୍ ଏଟ୍ ଅଲ୍ ! ଆଉ ତାହା ବି ପୁଣି ଏତେ ସବୁ କହିଛି ।

**ପ୍ରଶ୍ନକର୍ତ୍ତା :** ସୁଧ ଖାଇପାରିବୁ ନା ନାହିଁ ?

**ଦାଦାଶ୍ରୀ :** ଚନ୍ଦୁଭାଇକୁ ସୁଧ ଖାଇବାର ଥିବ ତେବେ ଖାଉ, କିନ୍ତୁ ତା'କୁ

କହିବ ଯେ ପରେ ପ୍ରତିକ୍ରମଣ କରିବ ।

ଏହି ପ୍ରତିକ୍ରମଣ ଦ୍ୱାରା ସାମ୍ନାବାଲା ଉପରେ ପ୍ରଭାବ ପଡ଼େ ଏବଂ ସେ ପଇସା ଫେରାଇ ଦିଏ । ସାମ୍ନାବାଲା ଭିତରେ ଏପରି ସଦ୍‌ବୁଦ୍ଧି ଉତ୍ପନ୍ନ ହୋଇଯାଏ । ପ୍ରତିକ୍ରମଣ ଦ୍ୱାରା ଏହିପରି ସକାରାତ୍ମକ ପ୍ରଭାବ ହୁଏ । ତେବେ ଲୋକେ ଘରକୁ ଯାଇ ଯଦି ଉଧାରିବାଲାକୁ ଗାଳି ଦେବେ ତେବେ ତାହାର ଓଲଟା ପ୍ରଭାବ ହୁଏ ନା ନାହିଁ? ଲୋକେ ଓଲଟା ଆହୁରି ଅଧିକ ଜଟିଳ କରିଦିଅନ୍ତି । ପୁରା ଜଗତ ଇଫେକ୍ଟିଭ୍ ଅଟେ ।

**ପ୍ରଶ୍ନକର୍ତ୍ତା :** ଆମେ କେଉଁ ମହାଜନଙ୍କ ପ୍ରତିକ୍ରମଣ କରିବୁ, ତେବେ ମଧ୍ୟ ସେ ପଇସା ତ ମାଗିବ ନା?

**ଦାଦାଶ୍ରୀ :** ମାଗିବା ଏବଂ ନ ମାଗିବାର ପ୍ରଶ୍ନ ହିଁ ନାହିଁ, ରାଗ୍-ଦ୍ୱେଷ ନ ହେବା ଉଚିତ । ଉଧାର ତ କଦାଚିତ ବାକି ରହି ଯାଇ ବି ପାରେ!

କେହି କହେ, 'ମୋତେ ଧର୍ମ ଦରକାର ନାହିଁ । ଭୌତିକ ସୁଖ ଦରକାର ।' ତା'କୁ ମୁଁ କହିବି, 'ପ୍ରାମାଣିକ ରହିବୁ, ନୀତିର ପାଳନ କରିବୁ ।' ମନ୍ଦିର ଯିବାକୁ କହିବି ନାହିଁ । ଅନ୍ୟଙ୍କୁ ତୁ ଦେଉଛୁ, ତାହା ଦେବଧର୍ମ ଅଟେ । କିନ୍ତୁ ଅନ୍ୟର, *ଅଣହକ୍କର* (ବିନା ହକ୍କର) ନିଏ ନାହିଁ, ତାହା ମାନବ ଧର୍ମ । ଅର୍ଥାତ ପ୍ରାମାଣିକତା, ତାହା ସବୁଠାରୁ ବଡ଼ ଧର୍ମ । 'ଡିସ୍‌ଅନେସ୍ଟି ଇଜ୍ ଦ ବେସ୍ଟ ଫୁଲିଶନେସ୍!!!' ଅନେସ୍ଟି ହେଉ ନାହିଁ, ତେବେ କ'ଣ ସମୁଦ୍ରରେ ଡ଼େଇଁ ପଡ଼ିବି? ମୋ 'ଦାଦାଜୀ' ଶିଖାନ୍ତି ଯେ ଯଦି ଡିସଅନେସ୍ଟି ହୋଇଯାଅ ତେବେ ପ୍ରତିକ୍ରମଣ କର । ତୁମର ଆସନ୍ତାଜନ୍ମ ଉଜ୍ୱଳ ହୋଇଯିବ । ଡିସଅନେସ୍ଟିକୁ ଡିସଅନେସ୍ଟି ବୁଝ ଏବଂ ତାହାର ପ୍ରତିକ୍ରମଣ କର । ଏତିକି ନିଶ୍ଚିତ ଯେ ପ୍ରତିକ୍ରମଣ କରିବାବାଲା ବ୍ୟକ୍ତି ଅନେସ୍ଟ ଅଟେ ।

ଯଦି ଭାଗୀଦାର ସହ ମତଭେଦ ହୋଇଯାଏ, ତେବେ ତୁରନ୍ତ ତୁମକୁ ଜଣା ପଡ଼ିଯିବ ଯେ, 'ଏହା ଆବଶ୍ୟକତା ଠାରୁ ଅଧିକ କହିଦେଲି', ସେଥିପାଇଁ ତୁରନ୍ତ ତା'ନାମର ପ୍ରତିକ୍ରମଣ କରିନେବ । ଆମ ପ୍ରତିକ୍ରମଣ କ୍ୟାଶ୍ ପେମେଣ୍ଟ(ନଗଦ) ହେବା ଉଚିତ । ଏହି ବ୍ୟାଙ୍କ ବି କ୍ୟାଶ୍ କୁହାଯାଏ ଏବଂ ପେମେଣ୍ଟ ବି କ୍ୟାଶ୍ କୁହାଯାଏ ।

ଅଫିସରେ ପରମିଟ୍ ନେବାକୁ ଗଲେ, କିନ୍ତୁ ସାହେବ ନା କହିଦେଲେ ସେତେବେଳେ ମନରେ ହେବ ଯେ, 'ସାହେବ ଅଯୋଗ୍ୟ ଅଟନ୍ତି, ଏମିତି ଅଟନ୍ତି ସେମିତି ଅଟନ୍ତି ।' ଏବେ ଏହାର ଫଳ କ'ଣ ଆସିବ, ତାହା ତୁମକୁ ଜଣା ନାହିଁ । ସେଥିପାଇଁ ଏହି ଭାବ ବଦଳାଇ ଦେବ, ପ୍ରତିକ୍ରମଣ କରିନେବ । ଏହାକୁ ମୁଁ ଜାଗୃତି କହେ ।

ଏହି ସଂସାରରେ ଅନ୍ତରାୟ କିପରି ପଡ଼େ, ତାହା ତୁମକୁ ବୁଝାଉଛି । ତୁମେ ଯେଉଁ ଅଫିସରେ କାମ କରୁଛ, ସେଠି ତୁମ ଆସିଷ୍ଟାଣ୍ଟକୁ କମ ଅକଲ କହିଲ, ତେବେ ତାହାଦ୍ୱାରା ତୁମ ଅକଲ ଉପରେ ଅନ୍ତରାୟ ପଡ଼ିଲା ! କୁହ, ଏବେ ସାରା ସଂସାର ଏହି ଅନ୍ତରାୟରେ ଫଶି-ଫଶି ଏହି ମନୁଷ୍ୟ ଜନ୍ମକୁ ବ୍ୟର୍ଥ ହରାଉଛନ୍ତି ! ତୁମକୁ ଅଧିକାର ହିଁ ନାହିଁ, ସାମ୍ନାବାଲାକୁ କମ ଅକଲ କହିବା ପାଇଁ । ତୁମେ ଏପରି କହିବ ତେବେ ସାମ୍ନାବାଲା ବି ଓଲଟା କହିବ, ଏହାଦ୍ୱାରା ତା'କୁ ବି ଅନ୍ତରାୟ ପଡ଼ିବ ! ତାହେଲେ ଏବେ ଏହି ଜଗତରେ ଅନ୍ତରାୟ ପଡ଼ିବା ବନ୍ଦ ହେବ କିପରି ? କାହାକୁ ତୁମେ ଅଯୋଗ୍ୟ କୁହ ତେବେ ତୁମର ଯୋଗ୍ୟତା ଉପରେ ଅନ୍ତରାୟ ପଡ଼େ ! ଯଦି ତୁମେ ଏହାର ତୁରନ୍ତ ପ୍ରତିକ୍ରମଣ କର ତେବେ ସେ ଅନ୍ତରାୟ ପଡ଼ିବା ପୂର୍ବରୁ ଧୋଇଯିବ ।

**ପ୍ରଶ୍ନକର୍ତ୍ତା :** ଚାକିରୀର କର୍ତ୍ତବ୍ୟ ପାଳନ କରିବା ସମୟରେ ମୁଁ ବହୁତ କଠୋରତାର ସହ ଲୋକଙ୍କ ଅପମାନ କରିଥିଲି, ଧିକ୍କାରୀ ଦେଇଥିଲି ।

**ଦାଦାଶ୍ରୀ :** ସେ ସବୁର ପ୍ରତିକ୍ରମଣ କରିବ । ସେଥିରେ ତୁମ ହେତୁ ଖରାପ ନଥିଲା । ତୁମ ନିଜପାଇଁ ନୁହେଁ, ତାହା ସରକାରଙ୍କ ପ୍ରତି ସିନ୍ସିୟରିଟୀ ଥିଲା ।

## ୮. 'ଏପରି' ଭାଙ୍ଗିବ ଶୃଙ୍ଖଳା ଋଣାନୁବନ୍ଧର

**ପ୍ରଶ୍ନକର୍ତ୍ତା :** ପୂର୍ବଜନ୍ମର ଋଣାନୁବନ୍ଧରୁ ମୁକ୍ତ ହେବା ପାଇଁ କ'ଣ କରିବା ଉଚିତ ?

**ଦାଦାଶ୍ରୀ :** ଆମର ଯାହା ସହିତ ପୂର୍ବର ଋଣାନୁବନ୍ଧ ଥିବ ଏବଂ ସେ ଆମକୁ ପସନ୍ଦ ହିଁ ହେଉ ନଥିବ, ତାଙ୍କ ସହିତ ରହିବା ଭଲ ଲାଗୁ ହିଁ ନଥିବ ଆଉ ତଥାପି ଅନିବାର୍ଯ୍ୟ ରୂପେ ରହିବାକୁ ପଡ଼େ ତେବେ କ'ଣ କରିବା ଉଚିତ ? ତାଙ୍କ ସହିତ ବାହାରର ବ୍ୟବହାର ନିଶ୍ଚିତ ରଖିବା ଉଚିତ, କିନ୍ତୁ ଭିତରେ ତାଙ୍କ ନାମରେ ପ୍ରତିକ୍ରମଣ କରିବା ଉଚିତ । କାହିଁକିନା ଆମେ ପୂର୍ବଜନ୍ମରେ ଅତିକ୍ରମଣ କରିଥିଲେ, ତାହାର ଏହା ପରିଣାମ ଅଟେ । କଜେଜ୍ କ'ଣ କରିଥିଲେ ? ତେବେ କହିବା, ତା'ସହ ପୂର୍ବଜନ୍ମରେ ଅତିକ୍ରମଣ କରିଥିଲେ । ସେହି ଅତିକ୍ରମଣର ଏହି ଜନ୍ମରେ ଫଳ ଆସିଛି, ଏଣୁ ଯଦି ତାହାର ପ୍ରତିକ୍ରମଣ କରିବା ତେବେ ପ୍ଲସ-ମାଇନସ୍ ହୋଇଯିବ । ଅତଃ ଭିତରେ ଭିତରେ ତୁମେ ତା'ଠାରୁ କ୍ଷମା ମାଗିନିଅ । ବାରମ୍ବାର କ୍ଷମା ମାଗ ଯେ 'ମୁଁ ଯେଉଁ-ଯେଉଁ ଦୋଷ କରିଥିବି, ସେସବୁର କ୍ଷମା ମାଗୁଛି ।' କୌଣସି ବି ଭଗବାନଙ୍କ ସାକ୍ଷୀରେ, ତେବେ ସବୁ ନିଃଶେଷ ହୋଇଯିବ ।

ସହବାସ ପସନ୍ଦ ନଥିବ ତେବେ ପୁଣି କ'ଣ ହୁଏ ? ତା'କୁ ବହୁତ ଦୋଷୀ ଦେଖିବା ଦ୍ୱାରା, ଯଦି କୌଣସି ପୁରୁଷକୁ ସ୍ତ୍ରୀ ପସନ୍ଦ ନଥିବ ତେବେ ତା'ର ବହୁତ ଦୋଷ ଦେଖୁଥାଏ, ତେବେ ପୁଣି ତିରସ୍କାର ହୋଇଯାଏ । ତେଣୁ ଭୟ ଲାଗେ । ଯାହା ପ୍ରତି ଆମକୁ ତିରସ୍କାର ହେବ ତାହାର ଆମକୁ ଭୟ ଲାଗେ । ତା'କୁ ଦେଖିବା ମାତ୍ରେ ବ୍ୟାକୁଳତା (ଭୟ) ହେବାକୁ ଲାଗେ ତେବେ ବୁଝିବ ଯେ ଏହା ତିରସ୍କାର ଅଟେ । ଏଣୁ ତିରସ୍କାର ଛାଡ଼ିବା ପାଇଁ ବାରମ୍ବାର କ୍ଷମା ମାଗିଚାଲ, ଦୁଇ ଦିନରେ ହିଁ ସେ ତିରସ୍କାର ବନ୍ଦ ହୋଇଯିବ । ପଛେ ତା'କୁ ଜଣା ନପଡୁ କିନ୍ତୁ ତୁମେ ଭିତରେ ଭିତରେ ତା' ନାମ ନେଇ କ୍ଷମା ମାଗିଚାଲ । ଯାହା ପ୍ରତି ଯେଉଁ ଯେଉଁ ଦୋଷ କରିଥିବ ତେବେ କହିବ, 'ହେ ଭଗବାନ ! ମୁଁ କ୍ଷମା ମାଗୁଛି ।' ଏହା ଦୋଷର ପରିଣାମ ଅଟେ, ତୁମେ କୌଣସି ବି ବ୍ୟକ୍ତି ପ୍ରତି ଯାହା ବି ଦୋଷ କରିଥିବ, ତେବେ ଭିତରେ ତୁମେ କ୍ଷମା ମାଗିଚାଲ ଭଗବାନଙ୍କ ଠାରୁ, ତେବେ ସବୁ ଧୋଇଯିବ ।

ଏହା ତ ନାଟକ ଅଟେ । ନାଟକରେ ସ୍ତ୍ରୀ-ଛୁଆପିଲାଙ୍କୁ ସବୁଦିନ ପାଇଁ ନିଜର କରିନେବା କ'ଣ ଉଚିତ ହେବ ? ହଁ, ଯେପରି ନାଟକରେ କହନ୍ତି, ସେହିପରି କହିବାରେ ଅସୁବିଧା ନାହିଁ ଯେ 'ଇଏ ମୋ ବଡ଼ ପୁଅ, ଶତାୟୁ ।' କିନ୍ତୁ ସବୁ ଉପରୁ-ଉପରୁ, ନାଟକୀୟ । ଏ ସମସ୍ତଙ୍କୁ ସତ ମାନିଲେ, ସେଥିପାଇଁ ପ୍ରତିକ୍ରମଣ କରିବାକୁ ପଡୁଛି । ଯଦି ସତ ମାନି ନଥାନ୍ତେ ତେବେ ପ୍ରତିକ୍ରମଣ କରିବାକୁ ପଡ଼ି ନଥାନ୍ତା । ଯେଉଁଠି ସତ୍ୟ ମନାଯାଇଛି, ସେଠି ରାଗ୍ ଏବଂ ଦ୍ୱେଷ ଆରମ୍ଭ ହୋଇଯାଏ, ଏବଂ ପ୍ରତିକ୍ରମଣ ଦ୍ୱାରା ହିଁ ମୋକ୍ଷ ହୁଏ । 'ଦାଦାଜୀ' ଯେଉଁ ଦେଖାନ୍ତି, ସେହି ଆଲୋଚନା-ପ୍ରତିକ୍ରମଣ-ପ୍ରତ୍ୟାଖ୍ୟାନ ଦ୍ୱାରା ମୋକ୍ଷ ହୁଏ ।

କାହା ହାତରେ ହଇରାଣ କରିବାର ସତ୍ତା ମଧ୍ୟ ନାହିଁ ଏବଂ କାହା ହାତରେ ସହନ କରିବାର ସତ୍ତା ମଧ୍ୟ ନାହିଁ । ଏ ଯେଉଁ ସବୁ କାମ କରୁଛନ୍ତି, ସେମାନେ ସବୁ ତ ଖେଳଣା(କଣ୍ଢେଇ) ଅଟନ୍ତି । ତେବେ ପ୍ରତିକ୍ରମଣ କରିବା ଦ୍ୱାରା ଖେଳଣା ଆପେ ଆପେ ସିଧା ହୋଇଯିବେ ।

ନହେଲେ, କିଭଳି ବି ପାଗଳ ମଣିଷ ହେଉ କିନ୍ତୁ ଆମ ପ୍ରତିକ୍ରମଣ ଦ୍ୱାରା ସେ ସମଝଦାର ହୋଇପାରିବ ।

କେଉଁ ବ୍ୟକ୍ତି ସହ ତୁମର ଆଦୌ ପଡୁ ନଥିବ, ତୁମେ ଯଦି ତା'ର ପୁରାଦିନ ପ୍ରତିକ୍ରମଣ କରିବ, ଦୁଇ-ଚାରି ଦିନ ପର୍ଯ୍ୟନ୍ତ କରିଚାଲିବ ତେବେ ପାଞ୍ଚଦିନ ବେଳକୁ

ତ ସେ ତୁମକୁ ଖୋଜି ଖୋଜି ଆସି ଏଠି ପହଞ୍ଚିଯିବ। ତୁମ ଅତିକ୍ରମଣ ଦୋଷରୁ ହିଁ ଏ ସବୁ ଅଟକି ରହିଛି।

**ପ୍ରଶ୍ନକର୍ତ୍ତା :** ଏଥିରେ କେବେ ଆମକୁ ଦୁଃଖ ହୋଇଯାଏ ଯେ ମୁଁ ଏତେ କିଛି କରୁଛି ତଥାପି ଇଏ ମୋର ଅପମାନ କରୁଛି ?

**ଦାଦାଶ୍ରୀ :** ଆମକୁ ତାହାର ପ୍ରତିକ୍ରମଣ କରିବା ଉଚିତ। ଏହା ତ ବ୍ୟବହାର ଅଟେ। ଏଥିରେ ସବୁ ପ୍ରକାରର ଲୋକ ଥାଆନ୍ତି। ଯେଉଁମାନେ ମୋକ୍ଷରେ ଯିବାକୁ ଦିଅନ୍ତି ନାହିଁ।

**ପ୍ରଶ୍ନକର୍ତ୍ତା :** ଆମକୁ କାହିଁକି ପ୍ରତିକ୍ରମଣ କରିବା ଉଚିତ ?

**ଦାଦାଶ୍ରୀ :** ପ୍ରତିକ୍ରମଣ ଏଥିପାଇଁ କରିବା ଉଚିତ ଯେ ଏଥିରେ ମୋ କର୍ମର ଉଦୟ ଥିଲା ଏବଂ ତୁମକୁ (ସାମ୍ନାବାଲାକୁ) ଏପରି କର୍ମ ବାନ୍ଧିବାକୁ ପଡ଼ିଲା। ସେଥିପାଇଁ ପ୍ରତିକ୍ରମଣ କରୁଛି ଏବଂ ଆଉ ଏପରି କରିବି ନାହିଁ ଯାହାଦ୍ୱାରା ଅନ୍ୟ କାହାକୁ ମୋ ନିମିତ୍ତରୁ କର୍ମ ବାନ୍ଧିବାକୁ ପଡ଼ିବ !

ଜଗତ ଏପରି ନୁହେଁ ଯେ କାହାକୁ ମୋକ୍ଷରେ ଯିବାକୁ ଦେବ। ସବୁ ଦିଗରୁ ଆଙ୍କୁଡ଼ି ଏମିତି ଟାଣି ହିଁ ଦେବେ। ଯଦି ଆମେ ପ୍ରତିକ୍ରମଣ କରିବା ତେବେ ଆଙ୍କୁଡ଼ି ଖସିଯିବ। ସେଥିପାଇଁ ମହାବୀର ଭଗବାନ ଆଲୋଚନା, ପ୍ରତିକ୍ରମଣ ଏବଂ ପ୍ରତ୍ୟାଖ୍ୟାନ, ଏ ତିନି ଜିନିଷ ଗୋଟିଏ ଶବ୍ଦରେ ଦେଇଛନ୍ତି। ଅନ୍ୟ କୌଣସି ରାସ୍ତା ହିଁ ନାହିଁ। ଏବେ କେହି ନିଜେ ପ୍ରତିକ୍ରମଣ କେବେ କରିପାରିବ ? ନିଜକୁ ଜାଗୃତି ଥିବ ତେବେ, ଜ୍ଞାନୀପୁରୁଷଙ୍କ ପାଖରୁ ଜ୍ଞାନ ପ୍ରାପ୍ତ ହୋଇଯାଏ, ତେବେ ଏହି ଜାଗୃତି ଉତ୍ପନ୍ନ ହେବ।

ଆମେ ତ ପ୍ରତିକ୍ରମଣ କରିନେବା, ଅର୍ଥାତ ଆମେ ଉତ୍ତରଦାୟିତ୍ୱରୁ ବଞ୍ଚିଗଲେ।

**ପ୍ରଶ୍ନକର୍ତ୍ତା :** କେଉଁ ବ୍ୟକ୍ତି ଉପରୁ ଆମର ବିଶ୍ୱାସ ଉଠିଯାଇଥିବ, ସେ ଆମ ସହ ବିଶ୍ୱାସଘାତ କରିଥିବ ଏବଂ ଆମର ବିଶ୍ୱାସ ଉଠି ଯାଇଥିବ। ସେହି ବିଶ୍ୱାସକୁ ପୁନଃ ସ୍ଥାପିତ କରିବା ପାଇଁ କ'ଣ କରିବା ଉଚିତ ?

**ଦାଦାଶ୍ରୀ :** ତା'ପାଇଁ ଯାହା ବି ଖରାପ ବିଚାର କରିଥିବ, ସେସବୁ ପାଇଁ ପଶ୍ଚାତାପ କରିବା ଉଚିତ। ବିଶ୍ୱାସ ଉଠିଯିବା ପରେ ଆମେ ଯାହା ବି ଖରାପ ବିଚାର କରିଥିବା, ତାହାର ପଶ୍ଚାତାପ କରିବାକୁ ହେବ, ପରେ ଠିକ ହୋଇଯିବ। ସେଥିପାଇଁ ପ୍ରତିକ୍ରମଣ କରିବାକୁ ହେବ।

## ୯. ନିର୍ଲେପତା, ଅଭାବରୁ ଫାଶୀ ପର୍ଯ୍ୟନ୍ତ

**ପ୍ରଶ୍ନକର୍ତ୍ତା :** ସାମ୍ନାବାଲା ବ୍ୟକ୍ତିକୁ ଦୁଃଖ ହୋଇଛି, ଏହା କିପରି ଜଣା ପଡ଼ିବ ?

**ଦାଦାଶ୍ରୀ :** ତାହା ତ ତା'ର ଚେହେରା ଦେଖିଲେ ଜଣା ପଡ଼ିଯାଏ । ମୁହଁରୁ ହାସ୍ୟ ଚାଲିଯାଏ । ତା ଚେହେରା ମଉଳି ଯାଏ । ଅତଃ ତୁରନ୍ତ ଜଣା ପଡ଼ିଯାଏ ଯେ ସାମ୍ନାବାଲାକୁ ଦୁଃଖ ହୋଇଛି, ଏପରି ଜଣା ପଡ଼ିବ ନାହିଁ ?

**ପ୍ରଶ୍ନକର୍ତ୍ତା :** ଜଣା ପଡ଼ିବ ।

**ଦାଦାଶ୍ରୀ :** ମନୁଷ୍ୟର ତ ଏତିକି ଶକ୍ତି ଥାଏ ନିଶ୍ଚିତ ଯେ ସାମ୍ନାବାଲାକୁ କ'ଣ ହୋଇଛି, ତାହା ଜଣା ପଡ଼ିଯାଏ !

**ପ୍ରଶ୍ନକର୍ତ୍ତା :** କିନ୍ତୁ ଅନେକ ଏପରି ସିଆଣା ଥାଆନ୍ତି ଯେ ଚେହେରାରେ ଏକ୍ସପ୍ରେଶନ ଆସିବାକୁ ଦିଅନ୍ତି ନାହିଁ ।

**ଦାଦାଶ୍ରୀ :** ତଥାପି ନିଜକୁ ଜଣା ପଡ଼ିଯାଏ ଯେ ଏହା ମୋର କଠୋର ଶବ୍ଦ ବାହାରି ଗଲା, ଏଣୁ ତାଙ୍କୁ ବାଜିବ ତ ନିଶ୍ଚୟ । ଅତଃ ଏପରି ବୁଝି ପ୍ରତିକ୍ରମଣ କରିନେବା ଉଚିତ । କଠୋର ଶବ୍ଦ ବାହାରି ଯାଇଥିବ, ତେବେ କ'ଣ ନିଜକୁ ଜଣା ପଡ଼ିବ ନାହିଁ ଯେ, ତାଙ୍କୁ ଦୁଃଖ ହୋଇଥିବ ?

**ପ୍ରଶ୍ନକର୍ତ୍ତା :** ଜଣା ପଡ଼ିବ ନା !

**ଦାଦାଶ୍ରୀ :** ତାହା ବି ତାଙ୍କ ପାଇଁ କରିବାର ନାହିଁ । କିନ୍ତୁ ଆମ ଅଭିପ୍ରାୟ ଏଥିରେ ନାହିଁ । ଏହା ନିଜ ଅଭିପ୍ରାୟରୁ ଅଲଗା ହେବା ପାଇଁ ଅଟେ । ପ୍ରତିକ୍ରମଣ ମାନେ କ'ଣ ? ତାହା ପୂର୍ବର ଅଭିପ୍ରାୟରୁ ଅଲଗା ହେବା ପାଇଁ ଅଟେ ଏବଂ ପ୍ରତିକ୍ରମଣ ଦ୍ୱାରା କ'ଣ ହୁଏ ନା, ସାମ୍ନାବାଲା ଉପରେ ଯେଉଁ ପ୍ରଭାବ ହେଉଥିବ ତାହା ହେବନାହିଁ, ବିଲକୁଲ ବି ହେବ ନାହିଁ । ମନରେ ନିଶ୍ଚିତ କର ଯେ ମୋତେ ସମଭାବରେ *ନିକାଲ* କରିବାର ଅଛି ତେବେ ତା' ଉପରେ ପ୍ରଭାବ ପଡ଼ିବ ଏବଂ ତା' ମନ ଏପରି ସୁଧୁରିବ ଆଉ ତୁମେ ଯଦି ମନରେ ସ୍ଥିର କରିବ ଯେ ତା'କୁ ଏମିତି କରିଦେବି ସେମିତି କରିଦେବି ତେବେ ତା' ମନରେ ବି ସେହିପରି ହିଁ ରିଏକ୍ସନ୍ ହେବ ।

**ପ୍ରଶ୍ନକର୍ତ୍ତା :** କୌଣସି ବି ବ୍ୟକ୍ତିକୁ *ତରଛୋଡ଼୍* ମାରିବା (ତିରସ୍କାର ସହିତ ଧୀକ୍କାରିବା) ପରେ ପଶ୍ଚାତାପ ହେବ ତେବେ ତାହା କ'ଣ କୁହାଯିବ ?

**ଦାଦାଶ୍ରୀ :** ପଶ୍ଚାତାପ କରିବା ଦ୍ୱାରା *ତରଛୋଡ଼୍* ମାରିବାର ଅଭ୍ୟାସ ଚାଲିଯିବ । *ତରଛୋଡ଼୍* ମାରି ପୁଣି କିଛି ସମୟ ପର୍ଯ୍ୟନ୍ତ ଯଦି ପଶ୍ଚାତାପ ନ କରେ ଏବଂ ଏପରି ମାନେ ଯେ ମୁଁ କେତେ ଭଲ କଲି ତେବେ ତାହା ନର୍କରେ ଯିବାର ସଙ୍କେତ ଅଟେ । ଭୁଲ କରିବା ପରେ ପଶ୍ଚାତାପ ତ କରିବା ହିଁ ଉଚିତ ।

**ପ୍ରଶ୍ନକର୍ତ୍ତା :** ଯଦି ସାମ୍ନାବାଲାର ମନ ଭାଙ୍ଗିଥିବୁ ତେବେ ସେଥିରୁ ମୁକୁଳିବା ପାଇଁ କ'ଣ କରିବା ଉଚିତ ?

**ଦାଦାଶ୍ରୀ :** ପ୍ରତିକ୍ରମଣ କରିବା ଉଚିତ ଆଉ ଯଦି ସାମ୍ନା-ସାମ୍ନୀ ଦେଖା ହୋଇଯାଏ ତେବେ କହିବ ଯେ 'ଭାଇ, ମୋର ଅକଲ କମ, ମୋ ଦ୍ୱାରା ଭୁଲ ହୋଇଗଲା ।' ଏପରି କହିବା ଉଚିତ, ଏପରି କହିବା ଦ୍ୱାରା ତା' କ୍ଷତ ଭରିଯିବ ।

**ପ୍ରଶ୍ନକର୍ତ୍ତା :** କ'ଣ ଉପାୟ କରିବା ଉଚିତ ଯାଦ୍ୱାରା *ତରଛୋଡ଼୍*ର ପରିଣାମ ଭୋଗିବାର ସମୟ ହିଁ ନଆସେ ?

**ଦାଦାଶ୍ରୀ :** *ତରଛୋଡ଼୍* ପାଇଁ ଅନ୍ୟ କୌଣସି ଉପାୟ ନାହିଁ, ବାରମ୍ବାର ପ୍ରତିକ୍ରମଣ କରିବା ଉଚିତ । ଯେପର୍ଯ୍ୟନ୍ତ ସାମ୍ନାବାଲାର ମନ ପୁଣି ଥରେ ନ ବଦଳି ଯାଏ, ସେପର୍ଯ୍ୟନ୍ତ କରିବା ଉଚିତ । ଆଉ ଯଦି ସେ ପ୍ରତ୍ୟକ୍ଷ ଦେଖା ହୋଇଯାଏ ତେବେ ପୁଣି ମଧୁର ବାଣୀ କହି କ୍ଷମା ମାଗିନେବା ଉଚିତ ଯେ 'ଭାଇ, ମୋର ତ ବହୁତ ବଡ଼ ଭୁଲ ହୋଇଗଲା, ମୁଁ ତ ମୁର୍ଖ ଅଟେ, କମ ଅକଲ ଅଟେ ।' ଏହାଦ୍ୱାରା ସାମ୍ନାବାଲାର କ୍ଷତ ଭରିବାକୁ ଲାଗିବ । ଯେବେ ତୁମେ ନିଜେ ନିଜର ହିଁ ନିନ୍ଦା କରିବ ତେବେ ସାମ୍ନାବାଲାକୁ ଭଲ ଲାଗିବ, ସେତେବେଳେ ସେମାନଙ୍କ କ୍ଷତ ଭରିଯିବ ।

ମୋତେ ପୂର୍ବଜନ୍ମର *ତରଛୋଡ଼୍*ର ପରିଣାମ ଦେଖାଯାଉଛି । ସେଥିପାଇଁ ତ ମୁଁ କହୁଛି ଯେ କାହାରିକୁ *ତରଛୋଡ଼୍* ମାରିବା ଉଚିତ ନୁହେଁ । ମଜୁରିଆକୁ ବି ତରଛୋଡ଼୍ ମାରିବା ଉଚିତ ନୁହେଁ । ଆରେ, ଶେଷରେ ସାପ ହୋଇ ବି ପ୍ରତିଶୋଧ ନେବ । *ତରଛୋଡ଼୍*ରୁ ଛୁଟକାରା ମିଳେ ନାହିଁ । କେବଳ ପ୍ରତିକ୍ରମଣ ବଞ୍ଚାଇ ପାରିବ ।

**ପ୍ରଶ୍ନକର୍ତ୍ତା :** କାହାକୁ ଆମେ ଦୁଃଖ ପହଞ୍ଚାଇ ପୁଣି ଆମେ ପ୍ରତିକ୍ରମଣ କରିନେଲୁ, କିନ୍ତୁ ତା'କୁ ଯଦି ଗଭୀର ଆଘାତ ଅବା ସାମାନ୍ୟ ଚୋଟ ଲାଗି ଯାଇଥିବ ତେବେ କ'ଣ ତାହାଦ୍ୱାରା ଆମକୁ କର୍ମବନ୍ଧନ ହେବ ନାହିଁ ?

**ଦାଦାଶ୍ରୀ :** ତୁମେ ତାଙ୍କ ନାମରେ ପ୍ରତିକ୍ରମଣ କରିଚାଲ, ଏବଂ ତାଙ୍କୁ ଯେତିକି ଦୁଃଖ ହୋଇ ଯାଇଥିବ ସେତିକି ପ୍ରତିକ୍ରମଣ କରିବା ଉଚିତ ।

ଜଣେ ଜଜ୍ ମୋତେ ପଚାରିଲା ଯେ, 'ସାହେବ, ଆପଣ ମୋତେ ଜ୍ଞାନ ତ ଦେଲେ, ଆଉ ଏବେ ମୋତେ ସେଠି କୋର୍ଟରେ ମୃତ୍ୟୁ ଦଣ୍ଡର ଶାସ୍ତି ଦେବା ଉଚିତ ନା ନୁହେଁ?' ତେବେ ମୁଁ ତାଙ୍କୁ କହିଲି, 'ମୃତ୍ୟୁ ଦଣ୍ଡର ଶାସ୍ତି ଦେବ ନାହିଁ, ତେବେ ତା'ର କ'ଣ କରିବ?' ସେ କହିଲେ, 'କିନ୍ତୁ ମୋତେ ଦୋଷ ଲାଗିବ।' ମୁଁ କହିଲି, ମୁଁ ତୁମକୁ 'ଚନ୍ଦୁଭାଇ' ବନାଇଛି ନା 'ଶୁଦ୍ଧାତ୍ମା' ବନାଇଛି? ତେବେ ସେ କହିଲେ, 'ଶୁଦ୍ଧାତ୍ମା ବନାଇଛନ୍ତି।' ତେବେ ଯଦି ଚନ୍ଦୁଭାଇ କରୁଛନ୍ତି ତେବେ ସେଥିପାଇଁ ତୁମେ ଉତ୍ତରଦାୟୀ ନୁହଁ। ଆଉ ଉତ୍ତରଦାୟୀ ହେବାର ଥିବ ତେବେ ତୁମେ ଚନ୍ଦୁଭାଇ ଅଟ। ତୁମେ ରାଜି-ଖୁସିରେ ଭାଗିଦାର ହେବ ତେବେ ମୋତେ କୌଣସି ଅସୁବିଧା ନାହିଁ କିନ୍ତୁ ଭାଗୀଦାରୀ ରଖିବ ନାହିଁ। ପୁଣି ମୁଁ ତାଙ୍କୁ ଉପାୟ ବତାଇଲି ଯେ ତୁମକୁ ଏପରି କହିବା ଉଚିତ ଯେ, 'ହେ ଭଗବାନ! ମୋ ଭାଗରେ ଏ କାମ କେଉଁଠୁ ଆସିଲା' ଏବଂ ତାହାର ପ୍ରତିକ୍ରମଣ କରିବ ଆଉ ସରକାରଙ୍କ କାନୁନ୍ ଅନୁସାରେ କାର୍ଯ୍ୟ କରିଚାଲିବ। ବୁଝା ପଡ଼ିଲା ନା?

**ପ୍ରଶ୍ନକର୍ତ୍ତା :** ପ୍ରତିକ୍ରମଣ କରିଲେ ଛୁଟିଯିବୁ ଏପରି ଯଦି ଆମେ ଭାବିବୁ ତେବେ ସବୁ ଲୋକଙ୍କୁ ସ୍ୱଚ୍ଛନ୍ଦତାର ଲାଇସେନ୍ସ ମିଳିଯିବ।

**ଦାଦାଶ୍ରୀ :** ନା, ଏପରି ଦୃଷ୍ଟି ରଖିବ ନାହିଁ। କଥା ଏହିପରି ହିଁ ଅଟେ। ଆମକୁ ପ୍ରତିକ୍ରମଣ କରିବା ଉଚିତ। ପ୍ରତିକ୍ରମଣ କଲେ ଅର୍ଥାତ ଆମେ ଛୁଟିଗଲେ। ତୁମ ଉତ୍ତରଦାୟିତ୍ୱରୁ ତୁମେ ମୁକ୍ତ। ପରେ ଯଦି ସେ ବ୍ୟକ୍ତି ଚିନ୍ତା କରି, ମୁଣ୍ଡ ପିଟି ମରି ବି ଯାଏ, ତେବେ ସେଥିରେ ତୁମକୁ କିଛି ନେବା-ଦେବା ନାହିଁ।

ମୋ ଦ୍ୱାରା ବି କେଉଁ କେଉଁ ବ୍ୟକ୍ତିଙ୍କୁ ଦୁଃଖ ହୋଇଯାଏ। ମୋର ଇଚ୍ଛା ନଥାଏ, ଏବେ ତ ମୋ ଦ୍ୱାରା ଏପରି ହେଉନାହିଁ। କିନ୍ତୁ ତଥାପି କେଉଁ ବ୍ୟକ୍ତି ସାଥୀରେ ହୋଇଯାଏ। ଏପର୍ଯ୍ୟନ୍ତ, ପନ୍ଦର-କୋଡ଼ିଏ ବର୍ଷ ଭିତରେ ଦୁଇ-ତିନି ଲୋକଙ୍କ ସହିତ ହୋଇଥିବ। ସେ ମଧ ନିମିତ୍ତ ହୋଇଥିବ ତେବେ ନା? ମୁଁ ପରେ ପୁଣି ତାଙ୍କର ପ୍ରତିକ୍ରମଣ କରି ତା' ଉପରେ ପୁଣି ବାଡ଼ ଲଗାଇ ଦିଏ ଫଳରେ ସେ ପଡ଼ି ନଯାଉ। ଯେତିକି ମୁଁ ଉପରକୁ ଚଢ଼ାଇଛି ସେଠାରୁ ସେ ପଡ଼ି ନଯାଉ, ସେଥିପାଇଁ ବାଡ଼ ଲଗାଇ ଦିଏ। ତା'ର ସବୁ ରକ୍ଷଣ କରି ପରେ ଛାଡ଼ି ଦିଏ।

ମୁଁ ସିଦ୍ଧାନ୍ତିକ ଅଟେ ଯେ ଭାଇ, ଏହି ଗଛ ଲଗାଇଲେ, ତା'କୁ ଲଗାଇବା ପରେ ନୂଆ ରାସ୍ତା ତିଆରି ବେଳେ ସେ ଯଦି ମଝିରେ ଆସୁଥିବ ତେବେ ରାସ୍ତାକୁ

ବୁଲାଇବି କିନ୍ତୁ ଗଛକୁ କିଛି ହେବାକୁ ଦେବିନାହିଁ । ମୋର ସିଦ୍ଧାନ୍ତ ଅଟେ ଏସବୁ । କାହାରିକୁ ପଡ଼ିବାକୁ ଦିଏ ନାହିଁ ।

**ପ୍ରଶ୍ନକର୍ତ୍ତା :** କେଉଁ ବ୍ୟକ୍ତି ଭୁଲ କରେ, ପରେ ଆମ ପାଖରେ କ୍ଷମା ମାଗେ, ତେବେ ଆମେ କ୍ଷମା କରିଦେଉ, ନ ମାଗିଲେ ମଧ୍ୟ ମନରେ କ୍ଷମା କରିଦେଉ, କିନ୍ତୁ ବାରମ୍ବାର ଯଦି ସେ ବ୍ୟକ୍ତି ଭୁଲ କରିଚାଲିବ ତେବେ ଆମକୁ କ'ଣ କରିବା ଉଚିତ ?

**ଦାଦାଶ୍ରୀ :** ପ୍ରେମର ସହ ବୁଝାଇବ, ଯେତିକି ବୁଝାଇ ହେବ ସେତିକି ବୁଝାଇବ । ଅନ୍ୟ କୌଣସି ଉପାୟ ନାହିଁ ଏବଂ ଆମ ହାତରେ ସତ୍ତା ନାହିଁ । ଏହି ଜଗତରେ କ୍ଷମା କରିବା ବ୍ୟତୀତ ଆମ ପାଖରେ ଅନ୍ୟ କୌଣସି ଚାରା ହିଁ ନାହିଁ । ଯଦି ତୁମେ କ୍ଷମା ନ କରିବ ତେବେ ମାଡ଼ ଖାଇ କ୍ଷମା କରିବାକୁ ପଡ଼ିବ । ଉପାୟ ହିଁ ନାହିଁ । ଆମେ ତା'କୁ ଏପରି ବୁଝାଇବା ଉଚିତ ଯେ ସେ ବାରମ୍ବାର ଭୁଲ ନକରୁ । ଏହିପରି ଭାବ ପରିବର୍ତ୍ତନ କରିଦେବା, ତେବେ ବହୁତ ହୋଇଗଲା । ସେ ତା'ର ଭାବ ପରିବର୍ତ୍ତନ କରିଦିଏ ଯେ ଏବେ ଭୁଲ କରିବାର ନାହିଁ । ତଥାପି ଯଦି ହୋଇଯାଏ ତେବେ ତାହା ଅଲଗା କଥା ।

ପୁଅକୁ ପରିବା ପାଇଁ ପଠାଇଲେ ଏବଂ ସେ ସେଥିରୁ ପଇସା କାଢ଼ିନେଲା ତେବେ ତାହା ଜାଣିବା ଦ୍ୱାରା କ'ଣ ଫାଇଦା ? ସେ ଯେମିତି ଅଟେ ତା'କୁ ସେମିତି ଚଳେଇ ନେବ, ତା'କୁ କ'ଣ ଫୋପାଡ଼ି ପାରିବା ? କ'ଣ ଆଉ ଗୋଟିଏ ନେବା ପାଇଁ ଯାଇପାରିବା ? ଆଉ ମିଳିବ ବି ନାହିଁ ନା ? କେହି ବିକିବେ ନାହିଁ ।

## ୧୦. ଘର୍ଷଣ ସାମ୍ନାରେ...

**ପ୍ରଶ୍ନକର୍ତ୍ତା :** କେବେ-କେମିତି ବେଶୀ ବଢ଼ି-ଚଢ଼ି ଯୁକ୍ତିତର୍କ ହୋଇଯାଏ, ଲମ୍ବା ବନ୍ଧ୍ ପଡ଼ିଯାଏ, ସେଥିପାଇଁ ଦୁଇ-ଚାରିଥର ଅବା ତାହାଠୁ ବି ଅଧିକ ପ୍ରତିକ୍ରମଣ କରିବାକୁ ପଡ଼ିବ ନା ପୁଣି ଥରେ କରିଲେ ସବୁର ହୋଇଯିବ ?

**ଦାଦାଶ୍ରୀ :** ଯେତିକି ହୋଇ ପାରୁଛି ସେତିକି କର । ଏବଂ ପୁଣି ସାମୂହିକ କରିନେବ । ବହୁତ ପ୍ରତିକ୍ରମଣ ଯଦି ଏକାଠି ହୋଇଯାଏ ତେବେ ସାମୂହିକ ପ୍ରତିକ୍ରମଣ କରିନେବ ଯେ 'ହେ ଦାଦା ଭଗବାନ ! ଏ ସବୁର ମୁଁ ଏକାସାଥୀରେ ପ୍ରତିକ୍ରମଣ କରୁଛି' ପୁଣି ହୋଇଗଲା ।

ଯାହାର କାହା ସହିତ ଘର୍ଷଣ ହୁଏ ନାହିଁ, ତା'ର ତିନି ଜନ୍ମରେ ମୋକ୍ଷ ହେବ,

ଏହାର ମୁଁ ଗ୍ୟାରେଣ୍ଟି ଦେଉଛି । ଘର୍ଷଣ ହୋଇଯାଏ ତେବେ ପ୍ରତିକ୍ରମଣ କରିନେବା ଉଚିତ । ଘର୍ଷଣ *ପୁଦ୍‌ଗଳ* ର ଅଟେ ଏବଂ *ପୁଦ୍‌ଗୁଳ* ସହ *ପୁଦ୍‌ଗଳ* ର ଘର୍ଷଣ ପ୍ରତିକ୍ରମଣ ଦ୍ୱାରା ନାଶ ହୁଏ ।

ସେ ଭାଗ କରୁଥିବ ତେବେ ତୁମେ ଗୁଣା କରିବ, ଏହାଦ୍ୱାରା ରକମ(ହିସାବ) ଉଡ଼ିଯିବ । ସାମ୍ନାବାଲା ପାଇଁ ଭାବିବା ଯେ, 'ସେ ମୋତେ ଏମିତି କହିଲା, ସେମିତି କହିଲା', ତାହା ହିଁ ଦୋଷ । ରାସ୍ତାରେ ଚାଲିବା ସମୟରେ ଯଦି କାନ୍ଥ ସହ ଧକ୍କା ହୋଇଯାଏ ତେବେ ତା' ସହ କାହିଁକି ଲଢୁ ନାହଁ ? ଗଛକୁ ଜଡ଼ (ନିଶ୍ଚେତନ) କାହିଁକି କହନ୍ତି ? ଯେଉଁମାନେ ଧକ୍କା ହୁଅନ୍ତି, ସେମାନେ ସବୁ ଗଛ ହିଁ ଅଟନ୍ତି ।

**ପ୍ରଶ୍ନକର୍ତ୍ତା :** ସ୍ଥୂଳ ଘର୍ଷଣର ଉଦାହରଣ ଦେଲେ, ପୁଣି ସୂକ୍ଷ୍ମ, ସୂକ୍ଷ୍ମତର ଏବଂ ସୂକ୍ଷ୍ମତମର ଉଦାହରଣ ଦିଅନ୍ତୁ । ସୂକ୍ଷ୍ମ ଘର୍ଷଣ କିପରି ହୋଇଥାଏ ?

**ଦାଦାଶ୍ରୀ :** ତୋତେ ତୋ ଫାଦର୍(ପିତା)ଙ୍କ ସହ ଯାହା ହୁଏ, ସେ ସବୁ ସୂକ୍ଷ୍ମ ଘର୍ଷଣ ।

**ପ୍ରଶ୍ନକର୍ତ୍ତା :** ମାନେ କାହାକୁ କହନ୍ତି ?

**ଦାଦାଶ୍ରୀ :** ସେଥିରେ ମାର-ପିଟ କର ?

**ପ୍ରଶ୍ନକର୍ତ୍ତା :** ନା ।

**ଦାଦାଶ୍ରୀ :** ତାହା ସୂକ୍ଷ୍ମ ଘର୍ଷଣ ।

**ପ୍ରଶ୍ନକର୍ତ୍ତା :** ସୂକ୍ଷ୍ମ ଅର୍ଥାତ ମାନସିକ ? ବାଣୀ ଦ୍ୱାରା ଯାହା ବି ହୁଏ, ତାହା ମଧ୍ୟ ସୂକ୍ଷ୍ମରେ ଯାଏ ?

**ଦାଦାଶ୍ରୀ :** ତାହା ସ୍ଥୂଳରେ । ଯାହା ସାମ୍ନାବାଲାକୁ ଜଣା ନ ପଡ଼େ, ଯାହା ଦେଖାଯାଏ ନାହିଁ, ସେ ସବୁ ସୂକ୍ଷ୍ମରେ ଆସେ ।

**ପ୍ରଶ୍ନକର୍ତ୍ତା :** ସେହି ସୂକ୍ଷ୍ମ ଘର୍ଷଣ କିପରି ଟାଳିବୁ ?

**ଦାଦାଶ୍ରୀ :** ପ୍ରଥମେ ସ୍ଥୂଳ, ପୁଣି ସୂକ୍ଷ୍ମ, ତା'ପରେ ସୂକ୍ଷ୍ମତର ଆଉ ଶେଷରେ ସୂକ୍ଷ୍ମତମ ଘର୍ଷଣ ଟାଳିବାର ଅଛି ।

**ପ୍ରଶ୍ନକର୍ତ୍ତା :** ସୂକ୍ଷ୍ମତର ଘର୍ଷଣ କାହାକୁ କୁହାଯିବ ?

**ଦାଦାଶ୍ରୀ :** ତୁମେ କାହାକୁ ମାରୁଥିବ ଆଉ ଏହି ଭାଇ ଜ୍ଞାନରେ ରହି ଦେଖନ୍ତି ଯେ 'ମୁଁ ଶୁଦ୍ଧାତ୍ମା ଅଟେ, ଏହା 'ବ୍ୟବସ୍ଥିତ ଶକ୍ତି' ମାରୁଛି', ଏହିପରି

ଦେଖନ୍ତି, କିନ୍ତୁ ମନରେ ଯଦି କିଞ୍ଚିତ୍‌ମାତ୍ର ବି ଦୋଷ ଦେଖନ୍ତି ତେବେ ତାହା ସୂକ୍ଷ୍ମତର ଘର୍ଷଣ ଅଟେ ।

**ପ୍ରଶ୍ନକର୍ତ୍ତା :** ଆଉଥରେ କୁହନ୍ତୁ, ଠିକରେ ବୁଝି ହେଲାନାହିଁ ।

**ଦାଦାଶ୍ରୀ :** ଏ ଯେଉଁ ତୁମେ ସବୁଲୋକଙ୍କର ଦୋଷ ଦେଖୁଛ ନା ! ତାହା ସୂକ୍ଷ୍ମତର ଘର୍ଷଣ ।

**ପ୍ରଶ୍ନକର୍ତ୍ତା :** ଅର୍ଥାତ ଅନ୍ୟର ଦୋଷ ଦେଖିବା, ତାହା ସୂକ୍ଷ୍ମତର ଘର୍ଷଣ ?

**ଦାଦାଶ୍ରୀ :** ଏପରି ନୁହେଁ, ନିଜେ ସ୍ଥିର କରିଥିବ ଯେ ଅନ୍ୟର ଦୋଷ ଦେଖିବାର ହିଁ ନାହିଁ ଆଉ ତଥାପି ଦୋଷ ଦେଖାଯାଏ, ତେବେ ତାହା ସୂକ୍ଷ୍ମତର ଘର୍ଷଣ । ଏପରି ଦୋଷ ତୁମକୁ ଜଣା ପଡ଼ିବା ଉଚିତ, କାରଣ ସେ ତ ଶୁଦ୍ଧାତ୍ମା ଅଟେ, ତଥାପି ତା'ର ଦୋଷ ଦେଖୁଛ ?

**ପ୍ରଶ୍ନକର୍ତ୍ତା :** ତେବେ ସେ ଯେଉଁ ମାନସିକ ଘର୍ଷଣ କହିଲେ ତାହା କ'ଣ ?

**ଦାଦାଶ୍ରୀ :** ସେ ସବୁ ତ ସୂକ୍ଷ୍ମରେ ଗଲା ।

**ପ୍ରଶ୍ନକର୍ତ୍ତା :** ତେବେ ଏହି ଦୁହିଁଙ୍କ(ସୂକ୍ଷ୍ମ ଏବଂ ସୂକ୍ଷ୍ମତର) ମଧ୍ୟରେ କ'ଣ ଫରକ ?

**ଦାଦାଶ୍ରୀ :** ଏହା ତ ମନଠାରୁ ବି ଉପରର କଥା ।

**ପ୍ରଶ୍ନକର୍ତ୍ତା :** ମାନସିକ ଘର୍ଷଣ ଏବଂ ଯେଉଁ ଦୋଷ...

**ଦାଦାଶ୍ରୀ :** ତାହା ମାନସିକ ନୁହେଁ ।

**ପ୍ରଶ୍ନକର୍ତ୍ତା :** ଅର୍ଥାତ ଏହି ସୂକ୍ଷ୍ମତର ଘର୍ଷଣ ହୁଏ, ସେହି ସମୟରେ ସୂକ୍ଷ୍ମ ଘର୍ଷଣ ମଧ୍ୟ ସାଥୀରେ ଥାଏ ନା ?

**ଦାଦାଶ୍ରୀ :** ତାହା ଆମକୁ ଦେଖିବାର ନାହିଁ ! ସୂକ୍ଷ୍ମ ଅଲଗା ଥାଏ ଏବଂ ସୂକ୍ଷ୍ମତର ଅଲଗା ଥାଏ । ସୂକ୍ଷ୍ମତର ମାନେ ତ ଅନ୍ତିମ କଥା ।

**ପ୍ରଶ୍ନକର୍ତ୍ତା :** ଥରେ ସତ୍‌ସଙ୍ଗରେ ହିଁ ଏପରି କହିଥିଲେ ଯେ ଚନ୍ଦୁଭାଇଙ୍କ ସହିତ ତନ୍ମୟାକାର ହେବା, ତାହା ସୂକ୍ଷ୍ମତମ ଘର୍ଷଣ କୁହାଯାଏ ।

**ଦାଦାଶ୍ରୀ :** ହଁ, ସୂକ୍ଷ୍ମତମ ଘର୍ଷଣ ! ତାହାକୁ ଟାଳିବ । ଭୁଲରେ ବି ତନ୍ମୟାକାର ହୋଇଯିବା ପରେ ପୁଣି ଜଣାପଡ଼େ ନା ଯେ, ଏହା ଭୁଲ ହୋଇଗଲା ।

**ପ୍ରଶ୍ନକର୍ତ୍ତା :** ଏବେ କେବଳ ଶୁଦ୍ଧାତ୍ମାନୁଭବ ବ୍ୟତୀତ ଏହି ଜଗତର କୌଣସି ବି ବିନାଶୀ ଜିନିଷ ମୋତେ ଦରକାର ନାହିଁ, ତଥାପି ଚନ୍ଦୁଭାଇଙ୍କୁ ବାରମ୍ବାର ତନ୍ମୟାକାର ଅବସ୍ଥା ରହେ । ତେବେ ତାହା ସୂକ୍ଷ୍ମତର ଘର୍ଷଣ ହେଲା ନା ?

**ଦାଦାଶ୍ରୀ :** ତାହା ତ ସୂକ୍ଷ୍ମତମ କୁହାଯିବ ।

**ପ୍ରଶ୍ନକର୍ତ୍ତା :** ତେବେ ଏହି ଘର୍ଷଣକୁ ଟାଳିବାର ଉପାୟ କେବଳ ପ୍ରତିକ୍ରମଣ ହିଁ ଅଟେ ନା ଆଉ କିଛି ବି ଅଛି ?

**ଦାଦାଶ୍ରୀ :** ଅନ୍ୟ କୌଣସି ବି ହତିୟାର ନାହିଁ ।

**ପ୍ରଶ୍ନକର୍ତ୍ତା :** କିନ୍ତୁ ଦାଦା, ଆମକୁ ପ୍ରତିକ୍ରମଣ କରିବାକୁ ପଡ଼ିବ, ତାହା ଆମର ଅହମ୍ କୁହାଯିବ ନାହିଁ ?

**ଦାଦାଶ୍ରୀ :** ନା, ଅର୍ଥାତ ତୁମକୁ ପ୍ରତିକ୍ରମଣ କରିବାର ନାହିଁ । ଚନ୍ଦୁଭାଇଙ୍କ ଦୋଷ ଅଟେ, ଶୁଦ୍ଧାତ୍ମା ତ କେବଳ ଜାଣେ । ଶୁଦ୍ଧାତ୍ମା ତ ଦୋଷ କରିନାହିଁ, ଏଣୁ ତା'କୁ କରିବାର ନାହିଁ । କେବଳ ଯିଏ ଦୋଷ କରିଛି ତା'କୁ, ଚନ୍ଦୁଭାଇ ପ୍ରତିକ୍ରମଣ କରିବେ । ଏବଂ ଅତିକ୍ରମଣରୁ ହିଁ ସଂସାର ଛିଡ଼ା ହୋଇଯାଇଛି । ଅତିକ୍ରମଣ କିଏ କରେ ? ଅହଂକାର ଏବଂ ବୁଦ୍ଧି ଦୁହେଁ ସାଥୀରେ ମିଶି ।

## ୧୧. ପୁରୁଷାର୍ଥ, ପ୍ରାକୃତ ଦୁର୍ଗୁଣ ସାମ୍ନାରେ...

ରାଗ୍ ବିନା ତ ଜୀବନ ହିଁ ବିତି ନଥିବ କାହାର । ଯେପର୍ଯ୍ୟନ୍ତ ଜ୍ଞାନପ୍ରାପ୍ତ ହୁଏ ନାହିଁ ସେପର୍ଯ୍ୟନ୍ତ ରାଗ୍ ଏବଂ ଦ୍ୱେଷ, କେବଳ ଏହି ଦୁଇ କରିଚାଲିଥାନ୍ତି । ତୃତୀୟ ଜିନିଷ କିଛି ହୁଏ ହିଁ ନାହିଁ ।

**ପ୍ରଶ୍ନକର୍ତ୍ତା :** କିନ୍ତୁ ଦାଦା, ଦ୍ୱେଷ ତାହା ତ ରାଗ୍ ର ହିଁ ସନ୍ତାନ ଅଟେ ନା ?

**ଦାଦାଶ୍ରୀ :** ହଁ, ସେ ତାହାର ସନ୍ତାନ ଅଟେ, କିନ୍ତୁ ତାହାର ପରିଣାମ ଅଟେ, ସନ୍ତାନ ଅର୍ଥାତ ତାହାର ପରିଣାମ ଅଟେ । ରାଗ୍ ଯଦି ଅଧିକ ମାତ୍ରାରେ ହୁଏ ନା, ଯାହା ଉପରେ ରାଗ୍ କରନ୍ତି, ତାହା ଯଦି ଅତ୍ୟଧିକ ବଢ଼ିଯାଏ, ତେବେ ତା' ଉପରେ ପୁଣି ଦ୍ୱେଷ ହୁଏ । କୌଣସି ବି ଜିନିଷ ଯଦି ତାହାର ସୀମାରୁ ବାହାରକୁ ଯାଏ ତେବେ ଆମକୁ ଅପ୍ରିୟ ଲାଗିବାକୁ ଲାଗିବ ଏବଂ ଅପ୍ରିୟ ଲାଗେ, ତାହାର ନାମ ଦ୍ୱେଷ ! ବୁଝା ପଡ଼ିଲା ?

**ପ୍ରଶ୍ନକର୍ତ୍ତା :** ହଁ, ବୁଝା ପଡ଼ିଲା ।

**ଦାଦାଶ୍ରୀ :** ତାହା ତ ଆମକୁ ବୁଝିନେବା ଉଚିତ ଯେ ଆମ ରିଏକ୍ସନ ହିଁ ଆସିଛି ସବୁ! ଆମେ ତା'କୁ (ସାମ୍ନାବାଲାକୁ) ମାନ ଦେଇ ଡାକିବା ଏବଂ ତା ମୁହଁ ଫୁଲାହୁଆ ଦିଶେ ତେବେ ଆମକୁ ବୁଝିନେବା ଉଚିତ ଯେ ଏହା ଆମର ହିଁ ରିଏକ୍ସନ ଅଟେ । ତେବେ କ'ଣ କରିବା ଉଚିତ ? ପ୍ରତିକ୍ରମଣ କରିବା । ଅନ୍ୟ କୌଣସି ଉପାୟ ନାହିଁ ଜଗତରେ । ସେତେବେଳେ ଏହି ଜଗତର ଲୋକେ କ'ଣ କରନ୍ତି ? ତା'ଉପରେ ପୁଣି ମୁହଁ ଫୁଲାନ୍ତି ! ଅର୍ଥାତ ଯେମିତି ଥିଲା ପୁଣି ସେମିତିକୁ ସେମିତି ହିଁ ଛିଡ଼ା କରିଲା । ଆମେ ଶୁଦ୍ଧାତ୍ମା ହେଲେ, ଏଣୁ ବୁଝାଇ-ସୁଝାଇ ନିଜ ଭୁଲ ସ୍ୱୀକାର କରି ମଧ୍ୟ ଛାଡ଼ି ଦେବା ଉଚିତ । ମୁଁ ତ ଜ୍ଞାନୀପୁରୁଷ ହେବା ସତ୍ତ୍ୱେ ମଧ୍ୟ ସବୁ ଭୁଲ ସ୍ୱୀକାର କରି କେସ୍ ଖତମ କରିଦିଏ ।

**ପ୍ରଶ୍ନକର୍ତ୍ତା :** ଯେଉଁ ଇର୍ଷା ହୁଏ, ତାହା ନ ହେଉ ସେଥିପାଇଁ କ'ଣ କରିବୁ ?

**ଦାଦାଶ୍ରୀ :** ତାହାର ଦୁଇଟି ଉପାୟ ଅଛି । ଇର୍ଷା ହୋଇଯିବା ପରେ ପଶ୍ଚାତାପ କରିବା ଉଚିତ । ଏବଂ ଦ୍ୱିତୀୟଟି, ଯେଉଁ ଇର୍ଷା ହୁଏ ସେ ଇର୍ଷା ତୁମେ କରନାହିଁ, ଇର୍ଷା ତ ପୂର୍ବଜନ୍ମର ପରମାଣୁ ଭରି ହୋଇରହିଛି, ତାହାକୁ ଯଦି ଏକ୍ସେପ୍ଟ ନ କରିବ, ସେଥିରେ ତନ୍ମୟାକାର ନ ହେବ ତେବେ ଇର୍ଷା ଉଡ଼ିଯିବ । ଇର୍ଷା ହେବାପରେ ପଶ୍ଚାତାପ କରିନେବ ତେବେ ଉତ୍ତମ ।

**ପ୍ରଶ୍ନକର୍ତ୍ତା :** ସାମ୍ନାବାଲା ଉପରେ ଶଙ୍କା କରିବାର ନାହିଁ, ତଥାପି ଶଙ୍କା ହୁଏ ତେବେ ତାହାକୁ କିପରି ଦୂର କରିବୁ ?

**ଦାଦାଶ୍ରୀ :** ସେଠି ପୁଣି ତା'ର ଶୁଦ୍ଧାତ୍ମାକୁ ସ୍ମରଣ କରି କ୍ଷମା ମାଗିବା ଉଚିତ । ତା'ର ପ୍ରତିକ୍ରମଣ କରିବା ଉଚିତ । ଏହା ତ ପୂର୍ବରୁ ଭୁଲ କରିଥିଲେ ସେଥିପାଇଁ ଶଙ୍କା ହେଉଛି ।

ଜଙ୍ଗଲରେ ଯିବାବେଳେ ଲୌକିକ ଜ୍ଞାନ ଆଧାରରେ ଯଦି ଏପରି ବିଚାର ଆସେ ଯେ ଲୁଟେରା ଆସିବେ ତେବେ ? ଅଥବା ବାଘ ଆସିଯିବ ତେବେ ? ଏପରି ବିଚାର ଯଦି ଆସେ ତେବେ ସେହି ସମୟରେ ପ୍ରତିକ୍ରମଣ କରିନେବ । ଶଙ୍କା ହେଲା ମାନେ ବିଗିଡ଼ିବ । ଶଙ୍କା ହେବାକୁ ଦେବନାହିଁ । କୌଣସି ବି ବ୍ୟକ୍ତି ଉପରେ ଶଙ୍କା ହୁଏ, ତେବେ ପ୍ରତିକ୍ରମଣ କରିବ । ଶଙ୍କା ହିଁ ଦୁଃଖଦାୟୀ ଅଟେ ।

ଶଙ୍କା ହେଲା ତେବେ ପ୍ରତିକ୍ରମଣ କରାଇ ନେବ । ଆଉ ଆମେ ତ ଏହି ବ୍ରହ୍ମାଣ୍ଡର ମାଲିକ, ଆମକୁ ଶଙ୍କା କାହିଁକି ହେବା ଉଚିତ ? ! ମନୁଷ୍ୟ ଅଟନ୍ତି ଏଣୁ ଶଙ୍କା ତ ହେବ । କିନ୍ତୁ ଭୁଲ ହେଲା ତେବେ ନଗଦ ପ୍ରତିକ୍ରମଣ କରିନେବ ।

ଯାହାପାଇଁ ଶଙ୍କା ହେଲା ତା'ର ପ୍ରତିକ୍ରମଣ କରିବ । ନଚେତ ଶଙ୍କା ତୁମକୁ ଖାଇଯିବ ।

କାହାପାଇଁ ଯଦି ସାମାନ୍ୟ ବି ଓଲଟା-ସିଧା ବିଚାର ଆସେ, ତେବେ ତୁରନ୍ତ ତାହାକୁ ଧୋଇଦେବ । ସେ ବିଚାର ଯଦି ଅଳ୍ପ ସମୟ ପାଇଁ ବି ରହେ ନା ତେବେ ସାମ୍ନାବାଲାକୁ ପହଞ୍ଚି ଯିବ ଏବଂ ପୁଣି ଅଙ୍କୁରିତ ହେବ । ଚାରି ଘଣ୍ଟା, ବାର ଘଣ୍ଟା, ନହେଲେ ଦୁଇଦିନ ପରେ ବି ତା'ଠାରେ ଅଙ୍କୁରିତ ହେବ (ତା' ଉପରେ ପ୍ରଭାବ ପଡ଼ିବ) । ଏଣୁ ସ୍ପନ୍ଦନର ପ୍ରବାହ ସେ ଦିଗରେ ନଯିବା ଉଚିତ ।

କୌଣସି ବି ଖରାପ କାର୍ଯ୍ୟର ଯଦି ପଶ୍ଚାତାପ କରିବ, ତେବେ ସେହି କାର୍ଯ୍ୟର ବାରଅଣା ଫଳ ନାଶ ହୋଇ ହିଁ ଯାଏ । ପୁଣି ଜଳିଯାଇଥିବା ରସି ଥାଏ ନା, ତାହାଭଳି ଫଳ ଦେବ । ସେ ଜଳାହୁଆ ରସିକୁ ଆସନ୍ତା ଜନ୍ମରେ ଏମିତି ହାତ ଲଗାଇବା, ତେବେ ଉଡ଼ିଯିବ । କୌଣସି ବି କ୍ରିୟା ଏମିତି ବ୍ୟର୍ଥ ତ ଯାଏ ହିଁ ନାହିଁ । ପ୍ରତିକ୍ରମଣ କରିବା ଦ୍ୱାରା ସେ ରସି ଜଳିଯାଏ କିନ୍ତୁ ଡିଜାଇନ୍ ସେମିତିକୁ ସେମିତି ହିଁ ରହେ । କିନ୍ତୁ ଆସନ୍ତା ଜନ୍ମରେ କ'ଣ କରିବାକୁ ପଡ଼ିବ ? ଏମିତି(ସାମାନ୍ୟ) ଝାଡ଼ିଦେଲେ ଉଡ଼ିଯିବ ।

## ୧୨. ଯାଏ ବ୍ୟସନ, ଜ୍ଞାନୀଙ୍କ ଉପାୟରେ

**ପ୍ରଶ୍ନକର୍ତ୍ତା :** ମୋତେ ସିଗାରେଟ ପିଇବାର ଖରାପ ଅଭ୍ୟାସ ପଡ଼ିଯାଇଛି ।

**ଦାଦାଶ୍ରୀ :** ତେବେ ତାହା ପାଇଁ ତୁ ଏପରି ଭାବ ରଖ ଯେ, 'ଏହା ଭୁଲ ଅଟେ, ଖରାପ ଜିନିଷ ଅଟେ', ଏପରି । ଆଉ ଯଦି କେହି କହେ ଯେ ସିଗାରେଟ କାହିଁକି ପିଉଛ? ତେବେ ତାହାର ରକ୍ଷଣ କରିବ ନାହିଁ । ଖରାପ ଅଟେ, ଏପରି କହିବ । ନହେଲେ ପୁଣି ଭାଇ, ଏହା ମୋର ଦୁର୍ବଳତା ଅଟେ, ଏପରି କହିବ । ତେବେ କେବେ ନା କେବେ ଛୁଟିବ ନହେଲେ ଯିବନାହିଁ ସେ ଅଭ୍ୟାସ ।

ମୁଁ ବି ପ୍ରତିକ୍ରମଣ କରୁଛି ନା, ଅଭିପ୍ରାୟରୁ ମୁକ୍ତ ହୋଇଯିବା ହିଁ ଉଚିତ । ଅଭିପ୍ରାୟ ରହିଯାଏ ତେବେ ଅସୁବିଧା ।

ଯଦି ପ୍ରତିକ୍ରମଣ କରେ ତେବେ ସେ ମନୁଷ୍ୟ ସବୁଠୁ ଉତ୍ତମ ଜିନିଷ ପାଇଗଲା । ଅର୍ଥାତ ଏହା ଟେକ୍‌ନିକାଲୀ ଅଟେ । ସାଇଣ୍ଟିଫିକାଲୀ ଏଥିରେ ଆବଶ୍ୟକତା ରହେ ନାହିଁ, କିନ୍ତୁ ଟେକନିକାଲୀ ଆବଶ୍ୟକ ।

**ପ୍ରଶ୍ନକର୍ତ୍ତା :** ସାଇଣ୍ଟିଫିକାଲୀ କିପରି ?

**ଦାଦାଶ୍ରୀ :** ସାଇଣ୍ଟିଫିକାଲୀ ତାହା ପୁଣି ତା'ର ଡିସାର୍ଜ ଅଟେ, ପରେ ତା'କୁ ଆବଶ୍ୟକ ହିଁ କ'ଣ ? ! କାରଣ ତୁମେ ଅଲଗା ଅଟ ଏବଂ ସେ ଅଲଗା ଅଟେ । ଏତେ ଶକ୍ତି ନାହିଁ ଏ ଲୋକଙ୍କର ! ଯଦି ପ୍ରତିକ୍ରମଣ ନ କରିବ ତେବେ ସେ ଅଭିପ୍ରାୟ ରହିଯିବ ଆଉ ତୁମେ ପ୍ରତିକ୍ରମଣ କରିବ ତେବେ ଅଭିପ୍ରାୟରୁ ଅଲଗା ହେଲ, ଏହି କଥା ନିଶ୍ଚିତ ଅଟେ ନା ? !

କାରଣ ଯେତିକି ଅଭିପ୍ରାୟ ରହିଲା, ସେତିକି ମନ ରହିଯିବ । କାରଣ ମନ ଅଭିପ୍ରାୟରୁ ତିଆରି ହୁଏ ।

ମୁଁ କ'ଣ କହିଛି ଯେ କୁଅଭ୍ୟାସ ପଡ଼ିଯାଇଛି, ସେଥିରେ ମୋତେ ଅସୁବିଧା ନାହିଁ, କିନ୍ତୁ ଯାହାର କୁଅଭ୍ୟାସ ପଡ଼ିଥିବ, ଭଗବାନଙ୍କଠାରେ ତାହାର ପ୍ରତିକ୍ରମଣ କରିବ ଯେ 'ହେ ଭଗବାନ! ଏ ମଦ ପିଇବା ଉଚିତ ନୁହେଁ, ତଥାପି ପିଉଛି । ସେଥିପାଇଁ କ୍ଷମା ମାଗୁଛି । ଆଉ, ଏହା ନ ପିଏ, ଏପରି ଶକ୍ତି ଦିଅନ୍ତୁ ।' ଏତିକି କରିବ ଭାଇ । ଯେବେକି ଲୋକେ ତ ବିରୋଧ କରନ୍ତି ଯେ ତୁ ମଦ କାହିଁକି ପିଉଛୁ ? ଆରେ, ଏପରି କରି ତୁ ତା'କୁ ବେଶୀ ବିଗାଡୁଛୁ । ତା'ର ଅହିତ କରୁଛୁ । ମୁଁ କ'ଣ କହିଛି, ତୁ କେତେ ବି ବଡ଼ ଦୋଷ କରି ଆସି ଥା, ତେବେ ଏହିପରି ପ୍ରତିକ୍ରମଣ କରିବୁ ।

**ପ୍ରଶ୍ନକର୍ତ୍ତା :** ଆପଣ ସକାଳେ ଚାହା ପିଇବା ସମୟରେ କହିଲେ ଯେ ମୁଁ ପ୍ରତ୍ୟାଖ୍ୟାନ କରିବା ପରେ ଚାହା ପିଇଲି ।

**ଦାଦାଶ୍ରୀ :** ହଁ, ସେମିତିରେ ତ ମୁଁ ଚାହା ପିଏ ନାହିଁ, ତଥାପି ଯଦି ପିଇବାର ସଂଯୋଗ ମିଳିଯାଏ ଆଉ ଅନିବାର୍ଯ୍ୟ ହୋଇଯାଏ ସେତେବେଳେ କ'ଣ କରିବାକୁ ପଡ଼େ ? ଯଦି ପ୍ରତ୍ୟାଖ୍ୟାନ ନକରି ପିଇନେବି ତେବେ ଲାଖିଯିବ । ଏଣୁ ରଙ୍ଗପାଣି ଅଜାଡ଼ିବାର ଅଛି କିନ୍ତୁ ତେଲ ଲଗାଇ । ହଁ । ମୁଁ ପ୍ରତ୍ୟାଖ୍ୟାନରୂପି ତେଲ ଲଗାଏ, ପରେ ସବୁଜ ରଙ୍ଗ ପାଣି ଅଜାଡ଼େ । କିନ୍ତୁ ଭିତରେ ସ୍ପର୍ଶ କରେ ନାହିଁ । ସେଥିପାଇଁ ପ୍ରତ୍ୟାଖ୍ୟାନ କରିବା ପରେ ଚାହା ପିଇଲି ମୁଁ !

କେବଳ ଏତିକି ହିଁ ବୁଝିବା ପରି ଅଟେ । ପ୍ରତ୍ୟାଖ୍ୟାନ କରିବା ପରେ କର ଏସବୁ । ପ୍ରତିକ୍ରମଣ ତ ଯେତେବେଳେ ଅତିକ୍ରମଣ ହେବ ସେତେବେଳେ କରିବ । ଚାହା ପିଇବାକୁ ପଡ଼େ ତାହା ଅତିକ୍ରମଣ କୁହାଯିବ ନାହିଁ । ଯଦି ପ୍ରତ୍ୟାଖ୍ୟାନ ନ କରିବ, ତେଲ ନ ଲଗାଇବ, ତେବେ ଟିକିଏ ଲାଗିଯିବ । ଏବେ ତେଲ ଲଗାଇ କର ନା ସବୁ !

ମୋତେ ଅଶାତା(ଦୁଃଖ ପରିଣାମ) କମ ହୁଏ । ଦେଖ ନା, ମାସ ସାରା

ମୋତେ ଏପରି ହେଲା ଯେ ଦାଦାଜୀଙ୍କୁ ଆକ୍ସିଡେଣ୍ଟର ସମୟ ଆସିଗଲା । ପରେ ଏ ଯାହା ହେଲା, ମାନ ଦୀପ ଲିଭିବାକୁ ଯାଉଛି, ଏପରି ହୋଇଯାଇଥିଲା ।

**ପ୍ରଶ୍ନକର୍ତ୍ତା :** ଏପରି କିଛି ହେବାର ନାହିଁ, ଦାଦାଜୀ ।

**ଦାଦାଶ୍ରୀ :** ନା ଏପରି ନୁହେଁ । 'ହୀରାବା'(ଦାଦାଜୀଙ୍କ ଧର୍ମପତ୍ନୀ) ଚାଲିଗଲେ ତେବେ କ'ଣ 'ଇଏ' (ଏ. ଏମ. ପଟେଲ) ଯିବେ ନାହିଁ? ଏହା କେଉଁ ବେଦନୀୟ କର୍ମ ଆସିଲା ?

**ପ୍ରଶ୍ନକର୍ତ୍ତା :** ଅଶାତା ବେଦନୀୟ ।

**ଦାଦାଶ୍ରୀ :** ଲୋକେ ବୁଝନ୍ତି ଯେ ମୋତେ ବେଦନୀୟ ଅଛି, କିନ୍ତୁ ମୋତେ ବେଦନୀୟ ସ୍ପର୍ଶ କରେ ନାହିଁ, ତୀର୍ଥଙ୍କରଙ୍କୁ ମଧ୍ୟ ସ୍ପର୍ଶ କରେ ନାହିଁ । ମୋତେ ହୀରାବାଙ୍କ ଯିବାର ଦୁଃଖ ନାହିଁ । ମୋତେ ପ୍ରଭାବ ହିଁ ହୁଏ ନାହିଁ କିଛି, ଲୋକଙ୍କୁ ଏପରି ଲାଗେ ଯେ ମୋତେ ବେଦନୀୟ କର୍ମ ଆସିଲା, ଅଶାତା ବେଦନୀୟ ଆସିଲା । କିନ୍ତୁ ମୋତେ ତ ଏହି କୋଡ଼ିଏ ବର୍ଷରେ ଏକ ମିନିଟ, ଏକ ସେକେଣ୍ଡ ବି ଅଶାତା ସ୍ପର୍ଶ ମଧ୍ୟ କରିନାହିଁ! ଏବଂ ଏହି ବିଜ୍ଞାନ ମୁଁ ତୁମକୁ ଦେଇଛି । ତୁମେ ଯଦି କଚ୍ଚା ପଡ଼ିଯିବ ତେବେ ତୁମର କ୍ଷତି । ଯଦି ବୁଝିନେବା ତେବେ କଚ୍ଚା ପଡ଼ିବା ହିଁ ନାହିଁ ନା, କେବେ ବି !

**ପ୍ରଶ୍ନକର୍ତ୍ତା :** ଅମ୍ବାଲାଲ ଭାଇଙ୍କୁ ତ ସ୍ପର୍ଶ କରୁଛି ନା ? 'ଦାଦା ଭଗବାନ'ଙ୍କୁ ତ ବେଦନୀୟ କର୍ମ ସ୍ପର୍ଶ କରେନାହିଁ ।

**ଦାଦାଶ୍ରୀ :** ନା, କାହାକୁ ବି ସ୍ପର୍ଶ କରେନାହିଁ । ଏପରି ଅଟେ ଏହି ବିଜ୍ଞାନ । ଯଦି ସ୍ପର୍ଶ କରୁଥାନ୍ତା ତେବେ ପାଗଳ ହିଁ ହୋଇଯିବେ ନା? ଏହା ତ ଅବୁଝାମିର ଦୁଃଖ । ସମଝଶକ୍ତି ଥିବ ତେବେ ଏହି ଫାଇଲ୍‌କୁ ବି ସ୍ପର୍ଶ କରିବ ନାହିଁ । କାହାକୁ ବି ସ୍ପର୍ଶ କରିବ ନାହିଁ । ଯାହା ବି ଦୁଃଖ ଅଛି ତାହା ନ ବୁଝିବା ଯୋଗୁଁ ହିଁ ଅଛି । ଏହି ଜ୍ଞାନକୁ ଯଦି ବୁଝିନେବା ନା, ତେବେ ଦୁଃଖ ରହିବ ବା କିପରି ? ଅଶାତା ବି ହେବ ନାହିଁ ଏବଂ ଶାତା(ସୁଖ ପରିଣାମ) ବି ହେବ ନାହିଁ ।

## ୧୩. ବିମୁକ୍ତି, ଆର୍ତ୍ତ-ରୌଦ୍ର ଧ୍ୟାନରୁ

**ପ୍ରଶ୍ନକର୍ତ୍ତା :** ଆର୍ତ୍ତଧ୍ୟାନ ଏବଂ ରୌଦ୍ରଧ୍ୟାନ ପ୍ରତିକ୍ଷଣ ହୋଇ ଚାଲିଥାଏ, ତେବେ ଆର୍ତ୍ତଧ୍ୟାନ କାହାକୁ କହିବା ଏବଂ ରୌଦ୍ରଧ୍ୟାନ କାହାକୁ କହିବା, ଏହାର ଟିକିଏ ସ୍ପଷ୍ଟୀକରଣ କରିଦିଅନ୍ତୁ ।

**ଦାଦାଶ୍ରୀ :** ନିଜେ ନିଜକୁ ହିଁ, ଅନ୍ୟ କାହାରିକୁ ମଝିରେ ଆଣେ ନାହିଁ, କାହାରିକୁ ଗୁଳି ବାଜେ ନାହିଁ, ଏପରି ସମ୍ଭାଳି, ନିଜେ ନିଜେ ଦୁଃଖ ସହ୍ୟ କରେ ତାହା ଆର୍ତଧ୍ୟାନ ଏବଂ କାହା ଉପରକୁ ଗୁଳି ମାରିଦେବା ତାହା ରୌଦ୍ରଧ୍ୟାନ ।

ଆର୍ତଧ୍ୟାନ ତ ଯଦି ନିଜକୁ ଜ୍ଞାନ ନଥିବ ଏବଂ 'ମୁଁ ଚନ୍ଦୁଭାଇ ଅଟେ' ଏପରି ହୋଇଯାଏ, ଆଉ ଏହା ମୋତେ ହେଲା ଅଥବା ହେବ ତେବେ କ'ଣ ହୋଇଯିବ ? ଝିଅମାନଙ୍କର ବାହାଘର କ'ଣ ତୁ କରିଥାନ୍ତୁ ? ଚବିଶ ବର୍ଷର ହୋଇଯିବେ ସେତେବେଳେ ବାହାଘର କରାଇବୁ । ଏ ତ ପାଞ୍ଚବର୍ଷର ହୋଇଥିବ ସେବେଠୁ ଚିନ୍ତା କରିବାକୁ ଲାଗେ । ଏହାକୁ ଆର୍ତଧ୍ୟାନ କରିବା କୁହାଯିବ । ବୁଝା ପଡ଼ିଲା ନା ?

ନିଜ ପାଇଁ ଓଲଟା ଭାବିବା, ଓଲଟା କରିବା, ନିଜ ଗାଡ଼ି ଚାଲିବ କି ନାହିଁ, ଦେହ ଖରାପ ହେଲା ଏବଂ ମରିଯିବି ତେବେ କ'ଣ ହେବ ? ଏସବୁ ଆର୍ତଧ୍ୟାନ କୁହାଯାଏ ।

ରୌଦ୍ରଧ୍ୟାନ ତ ଯଦି ତୁମେ ଅନ୍ୟପାଇଁ କଳ୍ପନା କର ଯେ ସେ ମୋର କ୍ଷତି କଲା, ତେବେ ତାହା ସବୁ ରୌଦ୍ରଧ୍ୟାନ କୁହାଯାଏ ।

ଏବଂ ଅନ୍ୟ ପାଇଁ ବିଚାର କରେ, ଅନ୍ୟର କିଛିନା କିଛି କ୍ଷତି ହେବାପରି ବିଚାର ଆସିଲା, ତେବେ ତାହା ରୌଦ୍ରଧ୍ୟାନ ହେଲା କୁହାଯିବ । ମନରେ ବିଚାର ଆସିଲା ଯେ କପଡ଼ା ଭିଡ଼ିକି ଦେବା । ତେବେ ଭିଡ଼ିକି ଦେବା କହିଲ ସେବେଠୁ ଗ୍ରାହକଙ୍କ ହାତରେ କପଡ଼ା କମ ଯିବ । ଏପରି କଳ୍ପନା କଲ ଏବଂ ତାହାର ପଇସା ବେଶୀ ମିଳିବ ଏପରି କଳ୍ପନା କଲ ତାହା ରୌଦ୍ରଧ୍ୟାନ କୁହାଯାଏ । ଅନ୍ୟମାନଙ୍କର କ୍ଷତି କରେ ଏପରି ଧ୍ୟାନ, ରୌଦ୍ରଧ୍ୟାନ କୁହାଯାଏ ।

ଏବେ ଭୟଙ୍କର ରୌଦ୍ରଧ୍ୟାନ କରିଥିବ, କିନ୍ତୁ ପ୍ରତିକ୍ରମଣ ଦ୍ୱାରା ତାହା ଆର୍ତଧ୍ୟାନରେ ପରିବର୍ତ୍ତିତ ହୋଇଯାଏ । ଦୁଇ ବ୍ୟକ୍ତି ଏକା ପ୍ରକାରର ରୌଦ୍ରଧ୍ୟାନ କଲେ, ଦୁହେଁ କହିଲେ ଯେ, 'ତାକୁ ଜୀବନରେ ମାରିଦେବି ।' ଏହିପରି ଦୁଇବ୍ୟକ୍ତି ମାରିବାର ଭାବ କଲେ, ତାହା ରୌଦ୍ରଧ୍ୟାନ କୁହାଯାଏ । କିନ୍ତୁ ସେମାନଙ୍କ ମଧ୍ୟରୁ ଜଣକୁ ଘରକୁ ଯିବାପରେ ପଶ୍ଚାତାପ ହେଲା ଯେ 'ମୁଁ ଏପରି ଭାବ କାହିଁକି କଲି ?' ଏଣୁ ତାହା ଆର୍ତଧ୍ୟାନ ବନିଗଲା ଏବଂ ଅନ୍ୟ ଭାଇର ରୌଦ୍ରଧ୍ୟାନ ରହିଲା ।

ଅତଃ ପଶ୍ଚାତାପ କରିବାଦ୍ୱାରା ରୌଦ୍ରଧ୍ୟାନ ବି ଆର୍ତଧ୍ୟାନ ହୋଇଯାଏ । ପଶ୍ଚାତାପ କରିବା ଦ୍ୱାରା ନର୍କଗତି ଅଟିକି ଯାଏ ଏବଂ ତିର୍ଯଁଚ ଗତି ହୁଏ । ଆଉ ଯଦି

ଅଧିକ ପଶ୍ଚାତାପ କରେ ତେବେ ତାହା ଧର୍ମଧ୍ୟାନ ହୋଇଯାଏ । ଥରେ ପଶ୍ଚାତାପ କରିଲେ ଆର୍ତଧ୍ୟାନ ହୋଇଯିବ ଏବଂ ବାରମ୍ବାର ପଶ୍ଚାତାପ କରିଲେ ଧର୍ମଧ୍ୟାନ ହୋଇଯିବ ଅର୍ଥାତ କ୍ରିୟା ତାହାକୁ ତାହା, କିନ୍ତୁ ଧ୍ୟାନ ବଦଳି ଚାଲେ ।

**ପ୍ରଶ୍ନକର୍ତ୍ତା :** 'ଆମେ' ନିଜେ ଅଲଗା ରହି ପ୍ରତିକ୍ରମଣ କରାଇବୁ ତେବେ ତାହା କ'ଣ ହେଲା କୁହାଯିବ ?

**ଦାଦାଶ୍ରୀ :** ଏପରି ଅଟେ ଯେ, ଆମେ ଶୁଦ୍ଧାତ୍ମା ହୋଇଗଲେ, କିନ୍ତୁ ଏହି *ପୁଦ୍‌ଗଲ୍*( ଯାହା ପୁରଣ ଗଳନ ହୁଏ) ର ଛୁଟକାରା ହେବା ଦରକାର ନା ? ଯେପର୍ଯ୍ୟନ୍ତ ତା'ପାଖରୁ ପ୍ରତିକ୍ରମଣ ନ କରାଇବା ସେପର୍ଯ୍ୟନ୍ତ ଛୁଟକାରା ହେବନାହିଁ । ଅର୍ଥାତ ଯେପର୍ଯ୍ୟନ୍ତ *ପୁଦ୍‌ଗଲ୍* କୁ ଧର୍ମଧ୍ୟାନରେ ନରଖିବା ସେପର୍ଯ୍ୟନ୍ତ ଛୁଟକାରା ହେବନାହିଁ । କାରଣ *ପୁଦ୍‌ଗଲ୍* କୁ ଶୁକ୍ଲଧ୍ୟାନ ହୋଇ ପାରିବ ନାହିଁ । ଏଣୁ *ପୁଦ୍‌ଗଲ୍* କୁ ଧର୍ମଧ୍ୟାନରେ ରଖ । ଅତଃ ବାରମ୍ବାର ପ୍ରତିକ୍ରମଣ କରାଇବ । ଯେତେଥର ଆର୍ତଧ୍ୟାନ ହେବ, ସେତେଥର ପ୍ରତିକ୍ରମଣ କରାଇବ ।

ଆର୍ତଧ୍ୟାନ ହେବା ତାହା ପୂର୍ବର ଅଜ୍ଞାନତା ଅଟେ ସେଥିପାଇଁ ହୋଇଯାଏ । ତେବେ 'ଆମେ' ତା'ପାଖରୁ ପ୍ରତିକ୍ରମଣ କରାଇବା ।

**ପ୍ରଶ୍ନକର୍ତ୍ତା :** ଅନ୍ୟର ଦୋଷ ଦେଖିବା ଦ୍ୱାରା ଆର୍ତଧ୍ୟାନ-ରୌଦ୍ରଧ୍ୟାନ ହୁଏ ?

**ଦାଦାଶ୍ରୀ :** ହଁ, ଭିତରେ ଯଦି ସେ ଅନ୍ୟର ଦୋଷ ଦେଖିବାର ମାଲ ଭରି ଆଣିଥିବ, ତେବେ ଏପରି ଦେଖେ । ତଥାପି ସେ ନିଜେ ଦୋଷରେ ଆସେ ନାହିଁ । ତା'କୁ ପ୍ରତିକ୍ରମଣ କରିବା ଉଚିତ ଯେ ଏପରି କାହିଁକି ହେଉଛି ? ଏପରି ନହେବା ଉଚିତ । ବାସ୍ ଏତିକି । ତାହା ତ ଯେମିତି ମାଲ ଭରା ହୋଇଥିବ, ସବୁ ସେମିତି ହିଁ ବାହାରିବ । ତାହାକୁ ମୁଁ ସାଧାରଣ ଭାଷାରେ 'ଭରାହୁଆ ମାଲ' କହେ ।

ଏବେ ରାତି ସାଢ଼େ ଏଗାରଟା ବେଳେ ଦଶ-ବାରଜଣ ଲୋକ ଆସନ୍ତି ଏବଂ 'ଚନ୍ଦୁଭାଇ ଅଛନ୍ତି କି ?' ଏପରି କହି ଡାକନ୍ତି । ତେବେ ତୁମେ କ'ଣ କହିବ ? ତୁମ ଗାଁରୁ ଆସିଥିବେ ଏବଂ ସେମାନଙ୍କ ମଧ୍ୟରୁ ଜଣେ ଦୁଇଜଣ ତୁମ ଜଣାଶୁଣା ହୋଇଥିବେ ଆଉ ବାକିସବୁ ଲୋକ ତାଙ୍କ ଜଣାଶୁଣା ହୋଇଥିବେ । ରାତି ସାଢ଼େ ଏଗାରଟା ବେଳେ ଯଦି ସେମାନେ ଡାକନ୍ତି ତେବେ କ'ଣ କହିବ ସେମାନଙ୍କୁ ? କବାଟ ଖୋଲିବ ନା ଖୋଲିବ ନାହିଁ ?

**ପ୍ରଶ୍ନକର୍ତ୍ତା :** ହଁ, ଖୋଲିବି ।

**ଦାଦାଶ୍ରୀ :** ଆଉ ପୁଣି କ'ଣ କହିବ ସେମାନଙ୍କୁ ? ଫେରିଯାଅ, ଏପରି କହିବ ?

**ପ୍ରଶ୍ନକର୍ତ୍ତା :** ନା, ନା, ଫେରିଯାଅ, ଏପରି କିପରି କହିହେବ ?

**ଦାଦାଶ୍ରୀ :** ତେବେ କ'ଣ କହିବ ?

**ପ୍ରଶ୍ନକର୍ତ୍ତା :** ଭିତରକୁ ଡାକିବି ମୁଁ । 'ଆସନ୍ତୁ ଭିତରକୁ' ।

**ଦାଦାଶ୍ରୀ :** 'ଆସନ୍ତୁ, ବସନ୍ତୁ, ବସନ୍ତୁ' । ଆମ ସଂସ୍କାର ଅଟେ ନା ? ସେଥିପାଇଁ 'ଆସନ୍ତୁ, ବସନ୍ତୁ' କହିବା, ସମସ୍ତଙ୍କୁ ସୋଫାସେଟ୍‌ରେ ବସାଇବା । ସୋଫାରେ ଯଦି ପିଲା ଶୋଇ ଯାଇଥିବ ତେବେ ସଙ୍ଗେ ସଙ୍ଗେ ଉଠେଇ ନେବା ଏବଂ ସୋଫାରେ ସେମାନଙ୍କୁ ବସାଇବା । କିନ୍ତୁ ମନରେ ଏପରି ହୁଏ ଯେ 'ଏହି ସମୟରେ କେଉଁଠୁ ଆସିଗଲେ ଏମାନେ ? !'

ଏବେ ଏହା ଆର୍ତ୍ତଧ୍ୟାନ ନୁହେଁ, ରୌଦ୍ରଧ୍ୟାନ ଅଟେ । ସାମ୍ନାବ୍ୟକ୍ତି ପ୍ରତି ଏପରି ଭାବ ବିଗାଡ଼ିବା, ଆର୍ତ୍ତଧ୍ୟାନ ତ ନିଜେ ନିଜର ହିଁ ଦୁଃଖ ଭୋଗିବା । ଏହା ତ ଅନ୍ୟ ଉପରେ 'ବ୍ଲେମ' (ଆରୋପ) ଲଗାଇଲେ ଯେ, 'ଏ ସମୟରେ କେଉଁଠୁ ଆସିଗଲେ ?'

ତଥାପି ଆମେ ଏବେ କ'ଣ କହିବା ? ଆମ ସଂସ୍କାର ତ ଛାଡ଼ିବ ନାହିଁ ନା ? ଧୀରେ କୁହେ ଯେ, 'ଅଳ୍ପ... ଅଳ୍ପ... ଅଳ୍ପ...' ଆରେ କିନ୍ତୁ କ'ଣ ? ତେବେ କହେ, 'ଅଳ୍ପ ଚା...' ସେତେବେଳେ ସେ ଏମିତି ଖୋଲାଖୋଲି କହିବା ବାଲା ଥାଆନ୍ତି, ସେମାନେ କହିବେ, 'ଚନ୍ଦୁଭାଇ, ଏହି ସମୟରେ ଚା ରହିବାକୁ ଦିଅ, ଏବେ ଖିଚିଡ଼ି-ଡାଲମା ବନେଇ ଦେବ ତେବେ ବହୁତ ହୋଇଗଲା ।' ଏବେ ଦେଖ ତୁମ ଘରବାଲୀର ହାଲତ । ରୋଷେଇ ଘରେ କ'ଣ ହୋଇଯିବ ?

ଏବେ ଭଗବାନଙ୍କ ଆଜ୍ଞା କ'ଣ ? ଯାହାକୁ ମୋକ୍ଷରେ ଯିବାର ଅଛି ତା'କୁ କ'ଣ କରିବା ଉଚିତ ? ଏହି ସମୟରେ କେଉଁଠୁ ଆସିଗଲେ, ଏପରି ଭାବ ଆସି ହିଁ ଯିବ ମଣିଷକୁ । ଏବେ ଏହା ଦୁଷମକାଳର ଚାପ ଅଟେ, ବାତାବରଣ ଏପରି ଅଟେ, ଅତଃ ତା'କୁ ଏପରି ବିଚାର ଆସିଯିବ । କେହି ଖାନ୍‌ଦାନୀ ହୋଇଥିବ ତା'କୁ ମଧ୍ୟ ଆସିଯିବ ।

ଏବେ ତୁ ଭିତରେ କାହିଁକି ଏପରି ଚିତ୍ରିତ କରୁଛୁ ? ବାହାରେ ଭଲ କରେ ଏବଂ ଭିତରେ ଓଲଟା ଚିତ୍ରିତ କରେ । ଅର୍ଥାତ ଆମେ ଏ ଯେଉଁ ଭଲ ଭାବରେ ଡାକୁଛେ ତାହା ପୂର୍ବଜନ୍ମର ଫଳ ଏବଂ ଏ ନୂଆ ଆସନ୍ତା ଜନ୍ମ ପାଇଁ ବାନ୍ଧୁଛେ ।

ଭିତରେ 'ଏହି ସମୟରେ କେଉଁଠୁ ଆସିଗଲେ' ଭାବି ଓଲଟା କର୍ମ ବାନ୍ଧୁଛେ ।

ଅତଃ ସେତେବେଳେ ଆମେ ଭଗବାନଙ୍କୁ କ୍ଷମା ମାଗି କହିବା ଯେ 'ଭଗବାନ ମୋର ଭୁଲ ହୋଇଗଲା । ଏହି ବାତାବରଣର ଚାପରେ କହିଗଲି କିନ୍ତୁ ମୋର ଇଚ୍ଛା ଏପରି ନାହିଁ । ପଛେ ସେମାନେ ରୁହନ୍ତୁ ।' ଏପରି କହି ତୁମେ ସଫା କରିଦିଅ, ଏହା ତୁମର ପୁରୁଷାର୍ଥ କୁହାଯିବ ।

ଏପରି ହେବ ତ ନିଶ୍ଚିତ, ଏପରି ତ ବଡ଼ ବଡ଼ ସଂଯମଧାରୀଙ୍କୁ ବି ହୋଇଯାଏ । ଏହି କାଳ ହିଁ ଏପରି ବିଚିତ୍ର ଅଟେ । କିନ୍ତୁ ଯଦି ତୁମେ ସଫା କରିଦେବ ତେବେ ତୁମକୁ ସେହିପରି ଫଳ ମିଳିବ ।

**ପ୍ରଶ୍ନକର୍ତ୍ତା :** ସାମାନ୍ୟତଃ ଏକ ଘଣ୍ଟାରେ ପାଞ୍ଚ-ପଚିଶ ଅତିକ୍ରମଣ ହୋଇଯାଏ ।

**ଦାଦାଶ୍ରୀ :** ତାହା ଏକ ସଙ୍ଗରେ କରିବ, ଏକ ସଙ୍ଗରେ ବି କରାଯାଇ ପାରେ । ସେସବୁ ପ୍ରତିକ୍ରମଣ ଏକ ସଙ୍ଗରେ କରୁଛି, କହିବ ।

**ପ୍ରଶ୍ନକର୍ତ୍ତା :** ତାହା କିପରି କରିବୁ ? କ'ଣ କହିବୁ ?

**ଦାଦାଶ୍ରୀ :** ଏ ବହୁତ ଅତିକ୍ରମଣ ହୋଇଗଲା, ଏଣୁ ଏ ସବୁର ସାମୂହିକ ପ୍ରତିକ୍ରମଣ କରୁଛି । ଦୋଷ ସ୍ୱୀକାର କରି କହିବ ଯେ ଏହି ଦୋଷର ସାମୂହିକ ପ୍ରତିକ୍ରମଣ କରୁଛି, ତେବେ ସମାଧାନ ଆସିଯିବ । ଆଉ ତଥାପି ଯଦି ବାକି ରହିଯାଏ ତେବେ ତାହାକୁ ଧୋଇଦେବ । ପରେ ଧୋଇଦେବ । କିନ୍ତୁ ସେଠାରେ ବସି ରହିବ ନାହିଁ । ବସି ରହିଲେ ପୁରାକୁ ପୁରା ରହିଯିବ । ଦ୍ୱିବିଧାରେ ପଡ଼ିବାର ଆବଶ୍ୟକତା ନାହିଁ ।

## ୧୪. ବାହାର କରନ୍ତି କଷାୟର ଗୁମ୍ଫାରୁ

**ପ୍ରଶ୍ନକର୍ତ୍ତା :** କାହା ଉପରେ ବହୁତ କ୍ରୋଧ ଆସିଗଲା, ଏବଂ ପୁଣି ସବୁ କହିସାରିବା ପରେ ଚୁପ ହୋଇଗଲୁ । ପରେ ଏ ଯାହାସବୁ କହିଦେଲୁ ସେଥିପାଇଁ ହୃଦୟ ଯଦି ବାରମ୍ବାର ଜଳୁଥାଏ, ତେବେ ତା' ପାଇଁ ଗୋଟିଏ ରୁ ଅଧିକ ପ୍ରତିକ୍ରମଣ କରିବାକୁ ହେବ ?

**ଦାଦାଶ୍ରୀ :** ସେଥିରେ ଦୁଇ-ତିନିଥର ହୃଦୟର ସହିତ ପ୍ରତିକ୍ରମଣ କରିବ ଆଉ ଏକଦମ୍ ଭଲଭାବରେ ହୋଇଗଲା ତେବେ ପୂରା ହୋଇଗଲା । 'ହେ ଦାଦା ଭଗବାନ ! ଭୟଙ୍କର ଅସୁବିଧା ଆସିଗଲା । ଅତ୍ୟଧିକ କ୍ରୋଧ ହୋଇଗଲା, ସାମ୍ନାବାଲାକୁ

କେତେ ଦୁଃଖ ହେଲା! ସେଥିପାଇଁ କ୍ଷମା ମାଗୁଛି । ଆପଣଙ୍କ ସାକ୍ଷୀରେ ଖୁବ୍ କ୍ଷମା ମାଗୁଛି ।'

**ପ୍ରଶ୍ନକର୍ତ୍ତା :** କାହା ସହିତ ଆବଶ୍ୟକତାଠାରୁ ଅଧିକ ବିବାଦ ହୋଇଯାଇଥିବ, ତେବେ ତାହାଦ୍ୱାରା ମନରେ ଦୂରତ୍ୱ ବଢ଼ିଚାଲେ । ଆଉ କାହା ସହିତ କେବେ ଥରେ-ଅଧେ ବିବାଦ ହୋଇ ଯାଇଥିବ, ତେବେ ସେଥିରେ ଦୁଇ-ଚାରିଥର, ଏପରି ଅଧିକ ଥର ପ୍ରତିକ୍ରମଣ କରିବାକୁ ହେବ ନା ଥରେ କଲେ ସବୁ ଆସିଯିବ ସେଥିରେ ?

**ଦାଦାଶ୍ରୀ :** ଯେତିକି ହୋଇପାରୁଛି ସେତିକି କରିବା ଏବଂ ଶେଷରେ ସାମୂହିକ କରିଦେବା । ବହୁତ ସାରା ପ୍ରତିକ୍ରମଣ ଏକାଠି ହୋଇଯାଏ ତେବେ ସାମୂହିକ ପ୍ରତିକ୍ରମଣ କରିନେବା ଯେ ଏହି ସମସ୍ତ କର୍ମର ପ୍ରତିକ୍ରମଣ ମୋ ଦ୍ୱାରା ଅଲଗା ଅଲଗା ହୋଇପାରୁନାହିଁ । ଏ ସବୁର ସାଥୀରେ ପ୍ରତିକ୍ରମଣ କରୁଛି । ଆମକୁ ଦାଦା ଭଗବାନଙ୍କୁ କହିଦେବାର ଅଛି, ତାହା ପହଞ୍ଚି ଯିବ ।

**ପ୍ରଶ୍ନକର୍ତ୍ତା :** ଆମେ ସାମ୍ନାବ୍ୟକ୍ତି ଉପରେ କ୍ରୋଧ କଲୁ, ପରେ ତୁରନ୍ତ ଆମେ ପ୍ରତିକ୍ରମଣ କରିନେଲୁ, ତଥାପି ଆମ କ୍ରୋଧର ପ୍ରଭାବ ସାମ୍ନାବ୍ୟକ୍ତି ଉପରୁ ତୁରନ୍ତ ଯିବ ନାହିଁ ନା ?

**ଦାଦାଶ୍ରୀ :** ତାହା ଯାଉ ବା ନଯାଉ, ତାହା ଆମକୁ ଦେଖିବାର ନାହିଁ । ଆମକୁ ତ ନିଜ କପଡ଼ା ଧୋଇ ସ୍ୱଚ୍ଛ ରହିବାର ଅଛି । ତୁମକୁ ଭିତରେ ଭଲ ଲାଗୁନାହିଁ ତଥାପି ହୋଇଯାଉଛି ନା ?

**ପ୍ରଶ୍ନକର୍ତ୍ତା :** କ୍ରୋଧ ହୋଇଯାଉଛି ।

**ଦାଦାଶ୍ରୀ :** ଏଣୁ ଆମକୁ ତାହା ଦେଖିବାର ନାହିଁ, ଆମକୁ ପ୍ରତିକ୍ରମଣ କରିବାର ଅଛି । ଆମକୁ କହିବାର ଅଛି ଯେ, 'ଚନ୍ଦୁଭାଇ ପ୍ରତିକ୍ରମଣ କର ।' ପରେ ସେ କପଡ଼ା ବିଗିଡ଼ିବା ମାତ୍ରେ ଧୋଇନେବ ! ବେଶୀ ଦ୍ୱିବିଧାରେ ପଡ଼ିବାର ନାହିଁ । ନହେଲେ ପରେ ଆମର ପୁଣି ବିଗିଡ଼ିବ ।

**ପ୍ରଶ୍ନକର୍ତ୍ତା :** ଏବେ ନିନ୍ଦା କଲା, ସେତେବେଳେ ପଛେ ତା'କୁ ଜାଗୃତି ନ ଥାଇପାରେ, ନିନ୍ଦା ହେଉ ଅଥବା ରାଗ ଆସୁ ସେହି ସମୟରେ ନିନ୍ଦା ହୋଇଯାଏ ।

**ଦାଦାଶ୍ରୀ :** ତାହାକୁ ହିଁ କଷାୟ କୁହାଯାଏ । କଷାୟ ଅର୍ଥାତ ଅନ୍ୟର ଅଙ୍କୁଶରେ ଆସିଗଲା । ସେହି ସମୟରେ ପଛେ ସେ କହୁ, କିନ୍ତୁ ତଥାପି ସେ ଜାଣିଥାଏ ଯେ 'ଏହା ଭୁଲ ହେଉଅଛି' । କେତେବେଳେ ଜଣା ପଡ଼େ ଏବଂ କେତେବେଳେ

ବିଲକୁଲ ବି ଜଣା ପଡ଼େ ନାହିଁ, ଏମିତି ଚାଲିଯାଏ । ପୁଣି କିଛି ସମୟ ପରେ ଜଣାପଡ଼େ, ଏହାର ଅର୍ଥ ଏପରି ଯେ ଯେତେବେଳେ ହେଲା ସେହି ସମୟରେ ମଧ୍ୟ 'ଜାଣିଥିଲା' ।

**ପ୍ରଶ୍ନକର୍ତ୍ତା :** ଆମ ଅଫିସରେ ତିନି-ଚାରିଜଣ ସେକ୍ରେଟରୀ ଅଛନ୍ତି । ତାଙ୍କୁ ଯଦି କୁହେ ଯେ ଏପରି କରିବାର ଅଛି, ଥରେ, ଦୁଇଥର, ଚାରିଥର, ପାଞ୍ଚଥର କହିବା ପରେ ମଧ୍ୟ ସେହିକୁ ସେହି ଭୁଲ କରନ୍ତି, ତେବେ ପୁଣି ରାଗ ଆସିଯାଏ, ତେବେ ତାହା ପାଇଁ କ'ଣ କରିବୁ ?

**ଦାଦାଶ୍ରୀ :** ତୁମେ ତ ଶୁଦ୍ଧାତ୍ମା ହୋଇଗଲ । ଏବେ ତୁମକୁ ରାଗ କେଉଁଠି ଆସୁଛି ? ରାଗ ତ ଚନ୍ଦୁଭାଇଙ୍କୁ ଆସୁଛି । ସେ ଚନ୍ଦୁଭାଇଙ୍କୁ ପୁଣି ଆମେ କହିବା, 'ଏବେ ତ ଦାଦାଜୀ ମିଳିଛନ୍ତି, ରାଗିବା ଟିକିଏ କମ କର ନା!'

**ପ୍ରଶ୍ନକର୍ତ୍ତା :** କିନ୍ତୁ ସେ ସେକ୍ରେଟରୀ ମାନଙ୍କର କିଛି ଇମ୍ପ୍ରୁଭମେଣ୍ଟ ହେଉନାହିଁ, ତେବେ କ'ଣ କରିବୁ ତାହା ପାଇଁ ? ସେକ୍ରେଟରୀଙ୍କୁ କିଛି ତ କହିବାକୁ ପଡ଼ିବ ନା, ନହେଲେ ସେମାନେ ତ ସେମିତିକୁ ସେମିତି ଭୁଲ କରିଚାଲିବେ, ସେମାନେ ଠିକ୍‌ରେ କାମ କରୁନାହାନ୍ତି ।

**ଦାଦାଶ୍ରୀ :** ତାହା ତ ଆମେ ଚନ୍ଦୁଭାଇଙ୍କୁ କହିବା, 'ତାଙ୍କୁ ଟିକିଏ ଗାଳି କର, ସମଭାବରେ *ନିକାଲ* କରି ଗାଳିକର ।' ଏମିତି ହିଁ ନାଟକୀୟ ରୂପେ ଗାଳି କରିବ ଯେ ଏମିତି ସବୁ କରିବ ତେବେ ତୁମ ଚାକିରୀ କେମିତି ରହିବ, ଏପରି ସବୁ କହିବ ।

**ପ୍ରଶ୍ନକର୍ତ୍ତା :** କିନ୍ତୁ ସେହି ସମୟରେ ତା'ଙ୍କୁ ଦୁଃଖ ହେବ ଏବଂ ଆପଣ କହିଲେ ଯେ ଅନ୍ୟକୁ ଦୁଃଖ ଦେବ ନାହିଁ ।

**ଦାଦାଶ୍ରୀ :** ଦୁଃଖ ହେବନାହିଁ । କାରଣ ଯେବେ ଆମେ ନାଟକୀୟ ରୂପରେ କହିବା ତେବେ ତାଙ୍କୁ ଦୁଃଖ ହେବ ନାହିଁ, କେବଳ ତାଙ୍କ ମନରେ ଜାଗୃତି ଆସିବ, ତାଙ୍କ *ନିଶ୍ଚୟ* ବଦଳିବ । ତୁମେ ଦୁଃଖ ଦେଉନାହଁ । ଦୁଃଖ ତ କେବେ ହେବ ? ଯଦି ଆମ ହେତୁ ଦୁଃଖ ଦେବାର ଥିବ ଯେ ତାଙ୍କୁ ସିଧା କରିଦେବି, ତେବେ ତାଙ୍କୁ ଦୁଃଖ ଉତ୍ପନ୍ନ ହେବ ।

ରାଗର ଜ୍ଞାତା-ଦ୍ରଷ୍ଟା ରହିଲ ଅର୍ଥାତ ରାଗ ସଫା ହୋଇ ଚାଲିଗଲା । ସେ ପରମାଣୁ ଶୁଦ୍ଧ ହୋଇ ଚାଲିଗଲା । ସେତିକି ହିଁ ତୁମର କର୍ତ୍ତବ୍ୟ ।

**ପ୍ରଶ୍ନକର୍ତ୍ତା :** କ୍ରୋଧ କରିବା ପରେ ଯଦି ପ୍ରତିକ୍ରମଣ କରିବୁ ତେବେ ତାହା ପୁରୁଷାର୍ଥ କୁହାଯିବ ନା ପରାକ୍ରମ ?

**ଦାଦାଶ୍ରୀ :** ତାହା ପୁରୁଷାର୍ଥ କୁହାଯିବ, ପରାକ୍ରମ କୁହାଯିବ ନାହିଁ ।

**ପ୍ରଶ୍ନକର୍ତ୍ତା :** ତେବେ ପୁଣି ପରାକ୍ରମ କାହାକୁ କହିବା ?

**ଦାଦାଶ୍ରୀ :** ପରାକ୍ରମ ତ ଏହି ପୁରୁଷାର୍ଥଠୁ ବି ଉପରେ । ଆଉ ଏହା ପରାକ୍ରମ ନୁହେଁ । ଏ ତ ଜଳାପୋଡ଼ା ହେଉଥିବ, ସେଥିରେ ଔଷଧ ଲଗାଇବା, ସେଥିରେ ପରାକ୍ରମ କେଉଁଠୁ ଆସିଲା ? ଏସବୁକୁ ଜାଣେ ଏବଂ ସେ ଜାଣିବା ବାଲାକୁ ଜାଣେ ତାହାର ନାମ ପରାକ୍ରମ । ଆଉ ପ୍ରତିକ୍ରମଣ କରିବା ତାହା ପୁରୁଷାର୍ଥ କୁହାଯାଏ । ଅନ୍ତରେ ଏହି ପ୍ରତିକ୍ରମଣ କରୁ କରୁ ଶବ୍ଦର ସମସ୍ତ ଜଞ୍ଜାଳ କମ ହୋଇଚାଲିବ । ସବୁ କମ ହୋଇଚାଲିବ ଆପେ ଆପେ । ନିୟମାନୁସାରେ ସବୁ କମ ହୋଇଚାଲିବ । ପ୍ରାକୃତିକ ରୂପେ ସବୁ ବନ୍ଦ ହୋଇଯିବ । ପ୍ରଥମେ ଅହଂକାର ଯିବ, ପରେ ବାକିସବୁ ଯିବେ । ସବୁ ଚାଲିଯିବେ ନିଜ-ନିଜ ଘରକୁ । ଏବଂ ଭିତରେ ଶାନ୍ତି ଅଛି, ଏବେ ଭିତରେ ଶାନ୍ତି ଅଛି ନା ?

ପ୍ରତିକ୍ରମଣ ଦ୍ୱାରା ସବୁ କର୍ମ ଉଡ଼ିଯାଏ । କର୍ତ୍ତାର ଅନୁପସ୍ଥିତି ଅଛି, ସେଥିପାଇଁ ସମ୍ପୂର୍ଣ୍ଣ ରୂପେ ଉଡ଼ିଯାଏ । କର୍ତ୍ତାର ଅନୁପସ୍ଥିତିରେ ଏହି ଫଳ ଆମେ ଭୋଗୁଅଛେ । କର୍ତ୍ତାର ଅନୁପସ୍ଥିତିରେ ଆମେ ଭୋକ୍ତା ହେଉଛେ, ସେଥିପାଇଁ ଏହା ଉଡ଼ିଯାଏ । ଆଉ ଏ ସଂସାରର ଲୋକେ କର୍ତ୍ତାର ଉପସ୍ଥିତିରେ ଭୋକ୍ତା ଅଟନ୍ତି । ସେଥିପାଇଁ ପ୍ରତିକ୍ରମଣ କରିବା ପରେ ମଧ୍ୟ ତା'ର କର୍ମ ଟିକିଏ ଢିଲା ହୋଇଯିବ କିନ୍ତୁ ଖତମ ହେବନାହିଁ । ଫଳ ନଦେଇ ରହିବ ନାହିଁ ଆଉ ତୁମର ତ ସେ କର୍ମ ପୁରା ଉଡ଼ିଯାଏ ।

କାହାର ଦୋଷ ନ ଦେଖାଯାଏ ତେବେ ବୁଝିବ ଯେ ସର୍ବବିରତୀ ପଦ ଅଟେ, ସଂସାରରେ ରହିବା ପରେ ମଧ୍ୟ ! ଏପରି ଏହି 'ଅକ୍ରମ ବିଜ୍ଞାନ'ର ସର୍ବବିରତୀ ପଦ ଅଲଗା ପ୍ରକାର ଅଟେ । ସଂସାରରେ ବସି, ମୁଣ୍ଡରେ ତେଲ ଲଗାଇ ମଧ୍ୟ, କାନରେ ସେଣ୍ଟେଡ଼ ତୁଳା ପୁରାଇ ବୁଲୁଥିବ, କିନ୍ତୁ ତଥାପି ତା'କୁ କାହାର ଦୋଷ ଦେଖାଯାଏ ନାହିଁ ।

ଯିଏ ବୀତଦ୍ୱେଷ (ଦ୍ୱେଷ ରହିତ) ହୋଇଗଲା, ସେ ଏକାବତାରୀ କୁହାଯାଏ । ବୀତଦ୍ୱେଷରେ ଯିଏ କଚ୍ଚା ରହିଥିବ, ତାଙ୍କର ଦୁଇ-ଚାରି ଜନ୍ମ ହେବ ।

## ୧୫. ଭାବ ଅହିଂସାର ମାର୍ଗରେ...

**ପ୍ରଶ୍ନକର୍ତ୍ତା :** ମୋକ୍ଷରେ ଯିବା ପୂର୍ବରୁ, ଯଦି କୌଣସି ବି ଜୀବ ସହିତ ନେବା-ଦେବା ଥିବ ତେବେ ଯଦି ଆମେ ତା'ର ପ୍ରତିକ୍ରମଣ କରିଚାଲିବୁ ତେବେ ସେ ଆମକୁ ମୁକ୍ତ କରିଦେବ ?

**ଦାଦାଶ୍ରୀ :** ହଁ ।

**ପ୍ରଶ୍ନକର୍ତ୍ତା :** କିନ୍ତୁ କ'ଣ କହିବୁ ?

**ଦାଦାଶ୍ରୀ :** ଯେଉଁ ଯେଉଁ ଜୀବଙ୍କୁ ମୋ ଦ୍ୱାରା ଯଦି କିଛି ବି ଦୁଃଖ ହୋଇଥିବ, ସେ ସମସ୍ତେ ମୋତେ କ୍ଷମା କର ।

**ପ୍ରଶ୍ନକର୍ତ୍ତା :** ପ୍ରତ୍ୟେକ ଜୀବ ?

**ଦାଦାଶ୍ରୀ :** ପ୍ରତ୍ୟେକ ଜୀବ ।

**ପ୍ରଶ୍ନକର୍ତ୍ତା :** ସେଥିରେ ପୁଣି ବାୟୁକାୟ, ତେଉକାୟ ସବୁ ଜୀବ ଆସିଯିବେ ?

**ଦାଦାଶ୍ରୀ :** ସେ ସବୁ କହିଲ, ସେଥିପାଇଁ ସେଥିରେ ସବୁ ଆସିଯିବେ ।

**ପ୍ରଶ୍ନକର୍ତ୍ତା :** ଅଜାଣତରେ କୌଣସି ଜୀବର ହିଂସା ହୋଇଯାଏ ତେବେ କ'ଣ କରିବୁ ?

**ଦାଦାଶ୍ରୀ :** ଅଜାଣତରେ ହିଂସା ହୋଇଯାଏ କିନ୍ତୁ ଜଣା ପଡ଼ିବା ପରେ ତୁରନ୍ତ ଆମକୁ ପଶ୍ଚାତାପ ହେବା ଉଚିତ ଯେ ଏପରି ନ ହେଉ । ପୁଣି ଏପରି ନହେଉ, ସେଥିପାଇଁ ଜାଗୃତି ରଖିବ, ଏପରି ନିଜର ଉଦ୍ଦେଶ୍ୟ ରଖିବ । ଭଗବାନ କହିଥିଲେ, କାହାକୁ ମାରିବାର ନାହିଁ ଏପରି ଦୃଢ଼ ଭାବ ରଖିବ । କୌଣସି ଜୀବକୁ ସାମାନ୍ୟ ମଧ୍ୟ ଦୁଃଖ ଦେବାର ନାହିଁ, ଏପରି ପ୍ରତ୍ୟେକ ଦିନ ପାଞ୍ଚଥର ଭାବନା କରିବ । 'ମନ-ବଚନ-କାୟାରୁ କୌଣସି ବି ଜୀବକୁ କିଞ୍ଚିତମାତ୍ର ଦୁଃଖ ନ ହେଉ' ସକାଳେ ଏହିପରି ପାଞ୍ଚଥର କହି ସଂସାରୀ ପ୍ରକ୍ରିୟା ଚାଲୁକରିବ, ତେବେ ଦାୟିତ୍ୱ କମ ହୋଇଯିବ । କାରଣ ଭାବ କରିବାର ଅଧିକାର ଅଛି, କ୍ରିୟା ନିଜ ସତ୍ତାରେ ନାହିଁ ।

**ପ୍ରଶ୍ନକର୍ତ୍ତା :** ଭୁଲରେ ହୋଇଯାଇଥିବ, ତେବେ ମଧ୍ୟ ପାପ ଲାଗିବ ନା ?

**ଦାଦାଶ୍ରୀ :** ଭୁଲରେ ନିଆଁରେ ହାତ ରଖି ଦେଇଥିବ ତେବେ କ'ଣ ହେବ ?

**ପ୍ରଶ୍ନକର୍ତ୍ତା :** ଜଳିଯିବ ।

**ଦାଦାଶ୍ରୀ :** ଛୋଟ ପିଲା ଜଳିବ ନାହିଁ ?

**ପ୍ରଶ୍ନକର୍ତ୍ତା :** ଜଳିବ ।

**ଦାଦାଶ୍ରୀ :** ସେ ବି ଜଳିବ ? ଅର୍ଥାତ କିଛି ବି ଛାଡ଼ିବ ନାହିଁ । ଅଜାଣତରେ କର ଅବା ଜାଣିଶୁଣି କର, କିଛି ଛାଡ଼ିବ ନାହିଁ ।

**ପ୍ରଶ୍ନକର୍ତ୍ତା :** କେଉଁ ମହାତ୍ମାଙ୍କୁ ଜ୍ଞାନ ପରେ ରାତିରେ ମଶା କାମୁଡୁ ଥିବେ ଏବଂ ସେ ରାତିରେ ଉଠି ମାରିବାକୁ ଲାଗନ୍ତି, ତେବେ ତାହା କ'ଣ କୁହାଯିବ ?

**ଦାଦାଶ୍ରୀ :** ତାହା ଭାବ ବିଗିଡ଼ିଲା କୁହାଯିବ । ଜ୍ଞାନର ଜାଗୃତି କୁହାଯିବ ନାହିଁ ।

**ପ୍ରଶ୍ନକର୍ତ୍ତା :** ତାହା ହିଂସକ ଭାବ କୁହାଯିବ ?

**ଦାଦାଶ୍ରୀ :** ହିଂସକଭାବ ତ କ'ଣ, କିନ୍ତୁ ଯେପରି ଥିଲା ସେପରି ହୋଇଗଲା । କିନ୍ତୁ ପରେ ପ୍ରତିକ୍ରମଣ କଲେ ଧୋଇଯିବ ।

**ପ୍ରଶ୍ନକର୍ତ୍ତା :** ପରଦିନ ପୁଣି ଯଦି ସେହିପରି କରେ ତେବେ ?

**ଦାଦାଶ୍ରୀ :** ଆରେ, ଶହେଥର କରେ ତେବେ ମଧ୍ୟ ପ୍ରତିକ୍ରମଣ ଦ୍ୱାରା ଧୋଇଯିବ ।

ମାରି ଦେବାର ତ ଭାବିବ ବି ନାହିଁ । କୌଣସି ବି ଜୀବ ଯଦି ଠିକ ନ ଲାଗେ ତେବେ ତା'କୁ ବାହାରେ ଛାଡ଼ି ଆସିବ । ତୀର୍ଥଙ୍କର 'ମାର' ଶବ୍ଦକୁ ହିଁ ବାହାର କରିଦେବା ପାଇଁ କହିଥିଲେ । 'ମାର' ଶବ୍ଦର ଉଚ୍ଚାରଣ ବି କରିବ ନାହିଁ । 'ମାର' ଜୋଖିମବାଲା ଶବ୍ଦ ଅଟେ । ଏତେ ଅଧିକ ଅହିଂସାବାଲା, ପରମାଣୁ ଏ ପର୍ଯ୍ୟନ୍ତ ଅହିଂସକ ହେବା ଉଚିତ ।

**ପ୍ରଶ୍ନକର୍ତ୍ତା :** ଭାବହିଂସା ଏବଂ ଦ୍ରବ୍ୟହିଂସାର ଫଳ ଏକ ପ୍ରକାରର ଆସେ ?

**ଦାଦାଶ୍ରୀ :** ଭାବହିଂସାର ଫଟୋ ଅନ୍ୟ କେହି ଦେଖି ପାରିବେ ନାହିଁ ଆଉ ଯେଉଁ ସିନେମା ପରି ଏ ଯେଉଁ ସିନେମା ଚାଲୁଛି ନା, ତାହା ଆମେ ଦେଖି ପାରୁଛେ, ସେସବୁ ଦ୍ରବ୍ୟହିଂସା ଅଟେ । ଭାବହିଂସା ସୂକ୍ଷ୍ମରେ ରହେ ଏବଂ ଦ୍ରବ୍ୟହିଂସା ତ ଦେଖାଯାଏ । ପ୍ରତ୍ୟକ୍ଷ, ମନ-ବଚନ-କାୟା ଦ୍ୱାରା ଯାହା ଜଗତରେ ଦେଖାଯାଏ, ତାହା ଦ୍ରବ୍ୟହିଂସା ଅଟେ । ତୁମେ କୁହ ଯେ ଜୀବମାନଙ୍କୁ ବଞ୍ଚାଇବା ଉଚିତ । ପରେ ବଞ୍ଚୁ କି ନବଞ୍ଚୁ, ତାହାର ଦାୟୀ ତୁମେ ନୁହଁ! ତୁମେ କୁହ ଯେ ଏହି ଜୀବମାନଙ୍କୁ ବଞ୍ଚାଇବା ଉଚିତ, ତୁମକୁ କେବଳ ଏତିକି ହିଁ କରିବାରଅଛି । ପୁଣି ହିଂସା ହୋଇଗଲା, ତାହାର ଉତ୍ତରଦାୟୀ

ତୁମେ ନୁହଁ! ହିଂସା ହୋଇଗଲା ତାହାର ପଶ୍ଚାତାପ, ତାହାର ପ୍ରତିକ୍ରମଣ କରିବ, ପରେ ସବୁ ଦାୟିତ୍ୱ ଚାଲିଗଲା ।

**ପ୍ରଶ୍ନକର୍ତ୍ତା :** ଆପଣଙ୍କ ବହିରେ ପଢ଼ିଛି ଯେ, 'ମନ-ବଚନ-କାୟାରୁ କୌଣସି ଜୀବକୁ କିଞ୍ଚିତ ମାତ୍ର ଦୁଃଖ ନହେଉ' କିନ୍ତୁ ଆମେ ତ ଚାଷୀ, ଏଣୁ ଯେତେବେଳେ ତମାଖୁ ଫସଲ ବୁଣୁ, ସେତେବେଳେ ଆମକୁ ପ୍ରତ୍ୟେକ ଚାରାର ଅଗ୍ରଭାବ, ଅର୍ଥାତ ତାହାର ବେକ ଭାଙ୍ଗିବାକୁ ହିଁ ପଡ଼େ । ତେବେ ଏହାଦ୍ୱାରା ତା'କୁ ଦୁଃଖ ତ ହେଲା ନା ? ତାହାର ପାପ ତ ଲାଗିବ ନିଶ୍ଚିତ ନା ? ଏହିପରି ଲକ୍ଷ-ଲକ୍ଷ ଚାରାର ବେକ ମୋଡ଼ି ଦେଉ । ତେବେ ଏହି ପାପର ନିବାରଣ କିପରି କରିବୁ ?

**ଦାଦାଶ୍ରୀ :** ତାହା ତ ଭିତରେ ମନରେ ଏପରି ହେବା ଉଚିତ ଯେ ଏପରି ବ୍ୟବସାୟ ମୋ ଭାଗରେ କେଉଁଠୁ ଆସିଲା ? ବାସ୍ ଏତିକି । ଚାରାର ଅଗ୍ରଭାଗ ବାହାର କରିଦେବ କିନ୍ତୁ ମନରେ ପଶ୍ଚାତାପ ହେବା ଉଚିତ ଯେ 'ଏପରି ବ୍ୟବସାୟ ମୋ ଭାଗରେ କେଉଁଠୁ ଆସିଲା । ଏପରି କରିବା ଉଚିତ ନୁହେଁ', ଏପରି ମନରେ ହେବା ଉଚିତ, ବାସ୍ ।

**ପ୍ରଶ୍ନକର୍ତ୍ତା :** କିନ୍ତୁ ଏଥିରେ ପାପ ତ ହେବ ନା ?

**ଦାଦାଶ୍ରୀ :** ତାହା ତ ହେବ । ତାହା ତୁମକୁ ଦେଖିବାର ନାହିଁ । ଯାହା ହୋଇଚାଲିଛି, ସେ ପାପକୁ ଦେଖିବାର ନାହିଁ । 'ଏହା ନ ହେବା ଉଚିତ', ଏପରି ତୁମକୁ ସ୍ଥିର କରିବାର ଅଛି, *ନିଶ୍ଚୟ* କରିବା ଉଚିତ । ଏହି ବ୍ୟବସାୟ କାହିଁକି ମିଳିଲା ? ଅନ୍ୟ ଭଲ କାମ ଯଦି ମିଳିଥାନ୍ତା ତେବେ ଆମେ ଏପରି କରି ନଥାନ୍ତେ । ଆଗରୁ ପଶ୍ଚାତାପ ହେଉନଥିଲା । ଯେପର୍ଯ୍ୟନ୍ତ ଏହା ଜାଣି ନଥିଲେ, ସେପର୍ଯ୍ୟନ୍ତ ପଶ୍ଚାତାପ ହେଉନଥିଲା । ଖୁସି ହୋଇ ଚାରାକୁ ଉପାଡ଼ି ଫୋପାଡ଼ି ଦେଉଥିଲେ । ତୁମକୁ ବୁଝା ପଡୁଛି ? ମୋ କହିବା ଅନୁସାରେ କରିବ ନା, ତୁମର ସବୁ ଦାୟିତ୍ୱ ମୋର । ଚାରା ଉପାଡ଼ି ଫୋପାଡ଼ି ଦିଅ, ସେଥିରେ ଅସୁବିଧା ନାହିଁ, ପଶ୍ଚାତାପ ହେବା ଉଚିତ ଯେ ଏହା ମୋ ଭାଗରେ କେଉଁଠୁ ଆସିଲା ?

ଚାଷବାସରେ ଜୀବଜନ୍ତୁ ମରନ୍ତି, ତାହାର ଦୋଷ ତ ଲାଗିବ ନା । ସେଥିପାଇଁ ଚାଷବାସବାଲାଙ୍କୁ ପ୍ରତିଦିନ ପାଞ୍ଚ-ଦଶ ମିନିଟ ଭଗବାନଙ୍କ ଠାରେ ପ୍ରାର୍ଥନା କରିବା ଉଚିତ ଯେ 'ଏ ଦୋଷ ହେଲା ସେଥିପାଇଁ କ୍ଷମା ମାଗୁଛି ।' ଚାଷୀକୁ କହେ ଯେ ତୁ ଏହି ବ୍ୟବସାୟ କରୁଛୁ ସେଥିରେ ଜୀବ ମରୁଛନ୍ତି, ସେଥିପାଇଁ ଏହିପରି ପ୍ରତିକ୍ରମଣ

କରିବୁ । ତୁ ଯେଉଁ ଭୁଲ କରୁଛୁ ସେଥିପାଇଁ ମୋତେ ଅସୁବିଧା ନାହିଁ । କିନ୍ତୁ ସେଥିପାଇଁ ତୁ ଏହିପରି ପ୍ରତିକ୍ରମଣ କର ।

**ପ୍ରଶ୍ନକର୍ତ୍ତା :** ଆପଣ ସେହି ବାକ୍ୟ କହିଥିଲେ ନା ଯେ 'ମନ-ବଚନ-କାୟାରୁ କୌଣସି ବି ଜୀବକୁ  ଦୁଃଖ ନହେଉ ।' ସକାଳେ ଯଦି ଏତିକି କହିବୁ ତେବେ ଚଳିବ ନା ନାହିଁ ?

**ଦାଦାଶ୍ରୀ :** ତାହା ପାଞ୍ଚଥର କହିବ, କିନ୍ତୁ ତାହା ଏହିପରି କହିବା ଉଚିତ ଯେ ପଇସା ଗଣିବା ସମୟରେ ଯେପରି ସ୍ଥିତି ଥାଏ, ସେହିପରି କରିବା ଉଚିତ । ଟଙ୍କା ଗଣିବା ସମୟରେ ଚିତ୍ତ ଯେପରି ଥାଏ, ଅନ୍ତଃକରଣ ଯେପରି ଥାଏ, କହିବା ସମୟରେ ସେହିପରି ରଖିବାକୁ ପଡ଼ିବ ।

## ୧୬. ଦୁଃଖଦାୟୀ, ବୈରର ଅସୁଲି

**ପ୍ରଶ୍ନକର୍ତ୍ତା :** ଆମେ ଯଦି ପ୍ରତିକ୍ରମଣ ନକରିବୁ ତେବେ ପୁଣି କେବେ ସାମ୍ନାବାଲା ପାଖକୁ ସୁଝିବା ପାଇଁ ଯିବାକୁ ପଡ଼ିବ ନା ?

**ଦାଦାଶ୍ରୀ :** ନା, ତାହା ସୁଝିବାର ନାହିଁ । ଆମେ ବାନ୍ଧିହୋଇ ରହିବା । ସାମ୍ନାବାଲା ସହ ଆମର କିଛି ନେବା-ଦେବା ନାହିଁ ।

**ପ୍ରଶ୍ନକର୍ତ୍ତା :** କିନ୍ତୁ ଆମକୁ ସୁଝିବାକୁ ପଡ଼ିବ ନା ?

**ଦାଦାଶ୍ରୀ :** ଅତଃ ଆମେ ହିଁ ବାନ୍ଧିହୋଇ ଅଛେ, ସେଥିପାଇଁ ଆମକୁ ପ୍ରତିକ୍ରମଣ କରିବା ଉଚିତ । ପ୍ରତିକ୍ରମଣ ଦ୍ୱାରା ଧୋଇଯିବ । ସେଥିପାଇଁ ତ ତୁମକୁ ହତିୟାର ଦେଇଛି ନା, ପ୍ରତିକ୍ରମଣ ।

**ପ୍ରଶ୍ନକର୍ତ୍ତା :** ଆମେ ପ୍ରତିକ୍ରମଣ କରିବୁ ଏବଂ ବୈର ଛାଡ଼ିଦେବୁ କିନ୍ତୁ ସାମ୍ନାବ୍ୟକ୍ତି ବୈର ରଖେ ତେବେ ?

**ଦାଦାଶ୍ରୀ :** ଭଗବାନ ମହାବୀରଙ୍କ ଉପରେ ବହୁତ ସାରା ଲୋକ ରାଗ୍ କରୁଥିଲେ ଏବଂ ଦ୍ୱେଷ କରୁଥିଲେ, ସେଥିରେ ମହାବୀରଙ୍କୁ କ'ଣ ? ବୀତରାଗଙ୍କୁ କିଛି ବି ସ୍ପର୍ଶ କରେ ନାହିଁ । ବୀତରାଗ ଅର୍ଥାତ ଶରୀରରେ ତେଲ ଲଗାଇବା ବିନା ବାହାରେ ବୁଲନ୍ତି ଏବଂ ବାକି ସବୁ ତେଲ ଲଗାଇ ବୁଲନ୍ତି । ତେଲବାଲା ଉପରେ ଧୂଳି ଲାଗିଯାଏ ।

**ପ୍ରଶ୍ନକର୍ତ୍ତା :** ଦୁଇ ବ୍ୟକ୍ତିଙ୍କ ମଧ୍ୟରେ ଯେଉଁ ବୈର ବାନ୍ଧିହୁଏ, ରାଗ୍-ଦ୍ୱେଷ ହୁଏ, ଏବେ ସେଥିରେ ମୁଁ ନିଜେ ପ୍ରତିକ୍ରମଣ କରି ମୁକ୍ତ ହୋଇଯିବି, କିନ୍ତୁ ଅନ୍ୟ ଜଣକ

ଯଦି ବୈର ନଛାଡ଼େ, ତେବେ ପୁଣି ଥରେ ସେ ଆସନ୍ତା ଜନ୍ମରେ ଆସି ସେହି ରାଗ୍-ଦ୍ୱେଷର ହିସାବ ପୂରା କରିବ ? କାହିଁକିନା ସେ ତ ତା'ର ବୈର ଚାଲୁ ହିଁ ରଖିଛି ନା ?

**ଦାଦାଶ୍ରୀ :** ପ୍ରତିକ୍ରମଣ ଦ୍ୱାରା ତା' ବୈର କମ ହୋଇଯିବ । ଥରକରେ ପିଆଜର ଏକ ପରସ୍ତ ଯିବ, ଦ୍ୱିତୀୟ ପରସ୍ତ, ଯେତିକି ପରସ୍ତ ତା'ର ଥିବ, ସେତିକି ଯିବ । ବୁଝା ପଡ଼ିଲା ତୁମକୁ ?

**ପ୍ରଶ୍ନକର୍ତ୍ତା :** ପ୍ରତିକ୍ରମଣ କରୁ, ସେହି ସମୟରେ ଯଦି ଅତିକ୍ରମଣ ହେବାକୁ ଲାଗେ ତେବେ କ'ଣ କରିବୁ ?

**ଦାଦାଶ୍ରୀ :** ପୁଣି ଅଳ୍ପ ସମୟ ପରେ କରିବ । ଆମେ ନିଆଁ ଲିଭାଇବା ପାଇଁ ଗଲେ ସେତେବେଳେ ପୁଣି ଗୋଟିଏ ଫଟାକା ଫୁଟିଲା, ତେବେ ଆମେ ପୁଣି ଯିବା । ପୁଣି ଅଳ୍ପ ସମୟ ପରେ ଲିଭାଇବା । ଏ ଫଟାକା ତ ଫୁଟି ଚାଲିବ । ଏହାର ନାମ ସଂସାର ।

ସେ କିଛି ଓଲଟା କରେ, ଅପମାନ କରେ ତେବେ ମଧ୍ୟ ମୁଁ ରକ୍ଷଣ ଦିଏ । ଜଣେ ଭାଇ ମୋର ବିରୋଧ କରିବାକୁ ଲାଗିଥିଲେ । ମୁଁ ସମସ୍ତଙ୍କୁ କହିଲି, ଏକ ଅକ୍ଷର ବି ଓଲଟା ବିଚାର କରିବ ନାହିଁ । ଆଉ ଓଲଟା ବିଚାର ଆସେ ତେବେ ପ୍ରତିକ୍ରମଣ କରିବ । ସେ ଭଲ ମଣିଷ ଅଟେ କିନ୍ତୁ ସେ ଲୋକେ କାହା ଅଧୀନରେ ଅଛନ୍ତି ? କଷାୟ ଅଧୀନରେ ଅଛନ୍ତି । ସେମାନେ ଆତ୍ମା ଅଧୀନରେ ନାହାନ୍ତି । ଯିଏ ଆତ୍ମାର ଅଧୀନରେ ଥାଏ ସେ ଏପରି ସାମ୍ନାରେ କହିବ ନାହିଁ । ଅତଃ କଷାୟର ଅଧୀନ ହୋଇସାରିଥିବା ମନୁଷ୍ୟ କୌଣସି ବି ପ୍ରକାରର ଦୋଷ କରେ ତେବେ ସେ କ୍ଷମା ଯୋଗ୍ୟ ଅଟେ । ସେ ନିଜ ଅଧୀନରେ ହିଁ ନାହିଁ ବିଚରା ! ସେ କଷାୟ କରେ ସେହି ସମୟରେ ଆମକୁ ଡୋରି ଢିଲା ଛାଡ଼ି ଦେବା ଉଚିତ । ନହେଲେ ସେତେବେଳେ ସବୁ ଓଲଟା ହିଁ କରିଦେବ । କଷାୟର ଅଧୀନ ଅର୍ଥାତ ଉଦୟକର୍ମର ଅଧୀନ । ଯେପରି ଉଦୟ ହେବ ସେହିପରି ଘୂରିବ ।

## ୧୭. ବାରଣ, ଅଭିପ୍ରାୟର 'ମୂଳ' କାରଣ ପାଇଁ...

ସାମ୍ନାବ୍ୟକ୍ତି କେମିତି ବି, ଭଲ ଭାବ ଅଥବା ଖରାପ ଭାବ ନେଇ ତୁମ ପାଖକୁ ଆସିଥିବ, କିନ୍ତୁ ତା'ସହ କିପରି ବ୍ୟବହାର କରିବ ତାହା ତୁମକୁ ଦେଖିବାର ଅଛି । ସାମ୍ନାବାଲାର ପ୍ରକୃତି ଟେଢା ଥିବ ତେବେ ସେ ଟେଢା ପ୍ରକୃତି ସହ ମୁଣ୍ଡଗରମ କରିବା ଉଚିତ ନୁହେଁ । ପ୍ରକୃତିରୁ ଯଦି ସେ ଚୋର ହୋଇଥିବ, ଆମେ ଦଶବର୍ଷ ହେଲାଣି

ତା'ର ଚୋରି ଦେଖୁଥିବା ଏବଂ ସେ ଆସି ଆମ ଗୋଡ଼ ଧରି ପକାଏ ତେବେ କ'ଣ ଆମକୁ ତା' ଉପରେ ବିଶ୍ୱାସ ରଖିବା ଉଚିତ? ନା, ଚୋରି କରିବାବାଲାକୁ ଆମେ କ୍ଷମା କରିଦେବା ଯେ ତୁ ଯା, ତୋତେ ଛାଡ଼ିଦେଲି । ମୋ ମନରେ ତୋ ପାଇଁ କିଛି ନାହିଁ, କିନ୍ତୁ ତା' ଉପରେ ବିଶ୍ୱାସ ରଖି ପାରିବା ନାହିଁ ଏବଂ ପୁଣି ତା'ର ସଙ୍ଗ ମଧ୍ୟ ରଖିପାରିବା ନାହିଁ । ଏହା ସତ୍ତ୍ୱେ ସଙ୍ଗ ରଖିଲ ଏବଂ ପୁଣି ବିଶ୍ୱାସ ରଖିବ ନାହିଁ ତେବେ ତାହା ମଧ୍ୟ ଦୋଷ । ବାସ୍ତବରେ ସଙ୍ଗ ରଖିବ ନାହିଁ ଆଉ ରଖିବ ତେବେ ତାହା ପାଇଁ ପୂର୍ବଗ୍ରହ ନରହିବା ଉଚିତ । ଯାହା ହେବ ତାହା ଠିକ ଏପରି ରଖିବା ଉଚିତ ।

**ପ୍ରଶ୍ନକର୍ତ୍ତା :** ତଥାପି ଓଲଟା ଅଭିପ୍ରାୟ ହୋଇଯାଏ ତେବେ କ'ଣ କରିବା ଉଚିତ?

**ଦାଦାଶ୍ରୀ :** ହୋଇଯାଏ ତେବେ କ୍ଷମା ମାଗିନେବ । ଯାହା ପ୍ରତି ଓଲଟା ଅଭିପ୍ରାୟ ହୋଇଯାଇଥିବ, ତା'ପାଖରୁ କ୍ଷମା ମାଗିନେବ ।

**ପ୍ରଶ୍ନକର୍ତ୍ତା :** ଭଲ ଅଭିପ୍ରାୟ ଦେବା ଉଚିତ ନା ନାହିଁ?

**ଦାଦାଶ୍ରୀ :** କିଛି ବି ଅଭିପ୍ରାୟ ଦେବ ନାହିଁ । ଆଉ ଯଦି ଦେଇ ଦିଆଯାଏ ତେବେ ତାହାକୁ ଆମେ ଧୋଇଦେବା । ଧୋଇବାର ସାଧନ ଅଛି ତୁମ ପାଖରେ, ଆଲୋଚନା-ପ୍ରତିକ୍ରମଣ-ପ୍ରତ୍ୟାଖ୍ୟାନର 'ଅମୋଘ ଅସ୍ତ୍ର' ।

**ପ୍ରଶ୍ନକର୍ତ୍ତା :** ଗାଢ଼ ଅଭିପ୍ରାୟ କିପରି ବାହାର କରିବୁ?

**ଦାଦାଶ୍ରୀ :** ଯେବେଠୁ ସ୍ଥିର କଲ ଯେ ବାହାର କରିବାର ଅଛି ସେବେଠୁ ବାହାରିବାକୁ ଲାଗେ । ଯଦି ବହୁତ ଗାଢ଼ ହୋଇଥିବ ସେସବୁକୁ ପ୍ରତିଦିନ ଦୁଇ-ଦୁଇ ଘଣ୍ଟା ଉଖାଡ଼ି ଚାଲିବା ତେବେ ତାହା ଖଲାସ ହୁଏ । ଆତ୍ମା ପ୍ରାପ୍ତି ପରେ ପୁରୁଷାର୍ଥ ଧର୍ମ ପ୍ରାପ୍ତ ହେଲା କୁହାଯାଏ ଏବଂ ପୁରୁଷାର୍ଥ ଧର୍ମ ପରାକ୍ରମ ପର୍ଯ୍ୟନ୍ତ ପହଞ୍ଚି ପାରେ, ଯାହା କୌଣସି ବି *ଅଟକଣ* (ଯାହା ବନ୍ଧନରୂପ ହୋଇଯାଏ, ଆଗକୁ ବଢ଼ିବାକୁ ନ ଦିଏ) କୁ ଉପାଡ଼ି ଫିଙ୍ଗି ଦେଇପାରେ । କିନ୍ତୁ ଥରେ ବୁଝିନେବା ଉଚିତ ଯେ ଏହି କାରଣରୁ ଏହା ଉତ୍ପନ୍ନ ହୋଇଛି, ପୁଣି ତାହାର ପ୍ରତିକ୍ରମଣ କରିବ ।

ଅଭିପ୍ରାୟ ନ ପଡ଼ିଯାଉ, କେବଳ ଏତିକି ହିଁ ଦେଖିବା ଉଚିତ । ସବୁଠୁ ବେଶୀ ସମ୍ଭାଳିବାର ଅଛି ଅଭିପ୍ରାୟ ପାଇଁ । ଅନ୍ୟ କିଛି ଅସୁବିଧା ନାହିଁ । କାହାକୁ ଦେଖିବା ପୂର୍ବରୁ ହିଁ ଅଭିପ୍ରାୟ ପଡ଼ିଯାଏ, ଏହି ସଂସାର ଜାଗୃତି ଏତେ ଅଧିକ ଅଟେ ଯେ ଅଭିପ୍ରାୟ ପଡ଼ିଯାଏ । ଅତଃ ଅଭିପ୍ରାୟ ପଡ଼ିବା ମାତ୍ରେ ତାହାକୁ ଧୋଇଦେବ । ଅଭିପ୍ରାୟ

ବାବଦରେ ବହୁତ ସାବଧାନ ରହିବାର ଆବଶ୍ୟକତା ଅଛି । ଅର୍ଥାତ ଅଭିପ୍ରାୟ ପଡ଼ିବ ନିଶ୍ଚିତ, କିନ୍ତୁ ତୁରନ୍ତ ଆମକୁ ଧୋଇଦେବା ଉଚିତ । ପ୍ରକୃତି ଅଭିପ୍ରାୟ ବାନ୍ଧେ ଏବଂ ପ୍ରଜ୍ଞାଶକ୍ତି ଅଭିପ୍ରାୟ ଛଡ଼ାଉ ଥାଏ । ପ୍ରକୃତି ଅଭିପ୍ରାୟ ବାନ୍ଧିଚାଲିବ, କିଛି ସମୟ ପର୍ଯ୍ୟନ୍ତ ବାନ୍ଧିଚାଲିବ କିନ୍ତୁ ଆମେ ତାହାକୁ ଧୋଇଚାଲିବା । ଅଭିପ୍ରାୟ ପଡ଼ିଯାଇଛି, ତାହାର ଫଳସ୍ୱରୂପ ତ ଏ ସବୁ ଝଂଝଟ୍ ହୋଇଛି ।

**ପ୍ରଶ୍ନକର୍ତ୍ତା :** ଅଭିପ୍ରାୟ ଯଦି ପଡ଼ିଯାଏ ତେବେ ତାହା ଛାଡ଼ିବୁ କିପରି ?

**ଦାଦାଶ୍ରୀ :** ଅଭିପ୍ରାୟ ଛାଡ଼ିବା ପାଇଁ ଆମକୁ କ'ଣ କରିବା ଉଚିତ ନା, 'ଏହି ବ୍ୟକ୍ତି ପାଇଁ ମୋର ଏପରି ଅଭିପ୍ରାୟ ପଡ଼ିଯାଇଛି, ଏହା ଠିକ୍ ନୁହେଁ, ମୁଁ ଏପରି କିପରି ମାନି ପାରିବି ?' ଏପରି କହିବା ଦ୍ୱାରା ଅଭିପ୍ରାୟ ଧୋଇଯିବ । ଆମେ ଜାହିର କରିବା ଯେ 'ଏହି ଅଭିପ୍ରାୟ ଠିକ୍ ନୁହେଁ, ଏ ଭାଇ ପାଇଁ କ'ଣ ଏପରି ଅଭିପ୍ରାୟ ରଖିବା ଉଚିତ ? ଏହା ତୁମେ କେମିତି କରୁଛ ?' ଏହିପରି ସେ ଅଭିପ୍ରାୟକୁ ଭୁଲ ଦର୍ଶାଇଲ, ତେବେ ତାହା ଧୋଇଯିବ ।

ପ୍ରତିକ୍ରମଣ ନ କରିବ ତେବେ ତୁମ ଅଭିପ୍ରାୟ ରହିଲା, ମାନେ ତୁମେ ବନ୍ଧନରେ ରହିଲ । ଯେଉଁ ଦୋଷ ହେଲା ସେଥିରେ ତୁମ ଅଭିପ୍ରାୟ ରହିଲା । ଏହି ପ୍ରତିକ୍ରମଣ କରିବ ତେବେ ତୁମ ଅଭିପ୍ରାୟ ଭାଙ୍ଗିଗଲା । ଅଭିପ୍ରାୟରୁ ହିଁ ମନ ଉତ୍ପନ୍ନ ହୋଇଛି । ଦେଖ, ମୋତେ କୌଣସି ବି ବ୍ୟକ୍ତି ପ୍ରତି କିଛି ବି ଅଭିପ୍ରାୟ ନାହିଁ, କାହିଁକିନା ଥରେ ଦେଖିନେବା ପରେ ମୁଁ ଅଭିପ୍ରାୟ ବଦଳାଏ ନାହିଁ । କେହି ମଣିଷ ସଂଯୋଗାନୁସାରେ ଚୋରି କରେ ଏବଂ ମୁଁ ଦେଖେ ତେବେ ମଧ୍ୟ ମୁଁ ତାକୁ ଚୋର କହିବି ନାହିଁ, କାହିଁକିନା ସଂଯୋଗାନୁସାରେ ଅଟେ । ଜଗତର ଲୋକେ କ'ଣ କହନ୍ତି ନା ଯିଏ ଧରା ପଡ଼ିଗଲା ତା'କୁ ଚୋର କୁହନ୍ତି । ସଂଯୋଗାନୁସାରେ ଥିଲା ନା ସର୍ବଦା ଚୋର, ଲୋକେ ଏପରି କିଛି ଦେଖନ୍ତି ନାହିଁ । ମୁଁ ତ ଯିଏ ସର୍ବଦା ଚୋର ତା'କୁ ଚୋର କହେ । ଆଉ ସଂଯୋଗାନୁସାରେ ଯିଏ ଚୋର ତା'କୁ ମୁଁ ଚୋର କହେ ନାହିଁ । ଅର୍ଥାତ ମୁଁ ତ, ଯଦି ଗୋଟିଏ ଅଭିପ୍ରାୟ ବନିଯାଏ, ପୁଣି ଅଭିପ୍ରାୟ ବଦଳାଏ ହିଁ ନାହିଁ । କୌଣସି ବି ବ୍ୟକ୍ତି ପାଇଁ ମୁଁ ଆଜି ପର୍ଯ୍ୟନ୍ତ ଅଭିପ୍ରାୟ ବଦଳାଇ ନାହିଁ ।

ଆମେ ଶୁଦ୍ଧ ହୋଇଗଲେ ଏବଂ ଚନ୍ଦୁଭାଇକୁ ଶୁଦ୍ଧ କରିବା ଏହା ଆମର କର୍ତ୍ତବ୍ୟ । ଏ *ପୁଦ୍‌ଗଲ* କ'ଣ କହେ ଯେ ଭାଇ, ମୁଁ ଶୁଦ୍ଧ ହିଁ ଥିଲି । ତୁମେ ଭାବ କରି ମୋତେ ବିଗାଡିଛ ଏବଂ ଏହି ସ୍ଥିତି ଯାଏଁ ମୋତେ ବିଗାଡ଼ିଛ । ନହେଲେ ମୋ ଠାରେ ରକ୍ତ, ପୂଜ, ହାଡ଼ କିଛି ବି ନଥିଲା । ମୁଁ ଶୁଦ୍ଧ ଥିଲି, ତୁମେ ମୋତେ ବିଗାଡ଼ିଛ । ଏଣୁ

ତୁମକୁ ଯଦି ମୋକ୍ଷରେ ଯିବାକୁ ଥିବ ତେବେ କେବଳ ତୁମେ ଶୁଦ୍ଧ ହୋଇଗଲ ତେବେ ଦିନ ସରିବ ନାହିଁ । ମୋତେ ଶୁଦ୍ଧ କରିବ ତେବେଯାଇ ତୁମର ଛୁଟକାରା ହେବ ।

## ୧୮. ଯିଏ ବିଷୟକୁ ଜିତିନିଏ, ସେ ରାଜାଙ୍କର ରାଜା

**ପ୍ରଶ୍ନକର୍ତ୍ତା :** ଗୋଟିଏ ଥର ଯଦି ବିଷୟର ବୀଜ ପଡ଼ିଯାଇଥିବ, ତେବେ ତାହା ରୂପକରେ ତ ଆସିବ ନିଶ୍ଚିତ ନା ?

**ଦାଦାଶ୍ରୀ :** ବୀଜ ପଡ଼ି ହିଁ ଯାଏ । ତାହା ରୂପକରେ ଆସିବ କିନ୍ତୁ ଯେପର୍ଯ୍ୟନ୍ତ ତାହାର ମୂଳ ସୂଦୃଢ଼ ହୋଇନାହିଁ, ସେପର୍ଯ୍ୟନ୍ତ କମ-ବେଶୀ ହୋଇପାରେ । ଅର୍ଥାତ ମରିବା ପୂର୍ବରୁ ତାହା ଶୁଦ୍ଧ ହୋଇପାରେ ।

ସେଥିପାଇଁ ମୁଁ ବିଷୟ ଦୋଷବାଲାଙ୍କୁ କହେ ଯେ ଯଦି ବିଷୟ ଦୋଷ ହୋଇଥିବ, ଅନ୍ୟ ଦୋଷ ହୋଇଥିବ, ତେବେ ତୁ ରବିବାର ଦିନ ଉପବାସ କରିବୁ ଏବଂ ପୁରା ଦିନ କେବଳ ଏହି ବିଚାର କରି, ମନ୍ଥନ କରି ତାହାକୁ ବାରମ୍ବାର ଧୋଇଚାଲିବୁ । ଏହିପରି ଆଜ୍ଞାପୂର୍ବକ ଯଦି କରେ ତେବେ କମ ହୋଇଯିବ ।

ଏବେ କେବଳ ଆଖିକୁ ସମ୍ଭାଳି ନିଅ । ଆଗରୁ ତ ବହୁତ ଶକ୍ତ ଲୋକ ଥିଲେ, ଆଖି ଫୋଡ଼ି ଦେଉଥିଲେ । ଆମକୁ ଆଖି ଫୋଡ଼ିବାର ନାହିଁ । ତାହା ମୁର୍ଖତା ଅଟେ । ଆମକୁ ଆଖି ହଟେଇ ଦେବାର ଅଛି । ଏହା ସତ୍ତ୍ୱେ ବି ଯଦି ଦେଖି ନିଆଯାଏ ତେବେ ପ୍ରତିକ୍ରମଣ କରିନେବା । ଏକ ମିନିଟ ପାଇଁ ବି ପ୍ରତିକ୍ରମଣ ଭୁଲିବ ନାହିଁ । ଖାଇବା-ପିଇବାରେ ଓଲଟା ହୋଇଯାଇଥିବ ତେବେ ଚଳିବ । ସଂସାରର ସବୁଠୁ ବଡ଼ ରୋଗ ହିଁ ଅଟେ ଏହା । ଏହି କାରଣରୁ ସଂସାର ତିଷ୍ଠି ରହିଛି (ଚାଲୁ ରହିଛି) । ଏହି ମୂଳ ଉପରେ ସଂସାର ଛିଡ଼ା ହୋଇରହିଛି । ମୂଳ ହିଁ ଅଟେ ଏହା ।

ହକ୍କର ଖାଏ ତେବେ ମନୁଷ୍ୟରେ ଆସିବ, *ଅଣହକ୍କ*(ବିନା ହକ୍କ, ଅବୈଧ)ର ଖାଏ, ତେବେ ପଶୁରେ ଯିବ ।

**ପ୍ରଶ୍ନକର୍ତ୍ତା :** ମୁଁ *ଅଣହକ୍କ* ର ତ ଖାଇଛି ।

**ଦାଦାଶ୍ରୀ :** ଖାଇଛ ତେବେ, ପ୍ରତିକ୍ରମଣ କର ଏବେ, ଏବେ ବି ଭଗବାନ ବଞ୍ଚେଇ ନେବେ । ଏବେ ବି ଦେରାସର (ମନ୍ଦିର) ରେ ଯାଇ ପଶ୍ଚାତାପ କର । *ଅଣହକ୍କ*ର ଖାଇ ଦେଇଥିବ ତେବେ ଏବେ ପଶ୍ଚାତାପ କର, ଏବେ ଜୀବିତ ଅଛ । ଏହି ଦେହରେ ଅଛ ସେପର୍ଯ୍ୟନ୍ତ ପଶ୍ଚାତାପ କର ।

**ପ୍ରଶ୍ନକର୍ତ୍ତା :** ଏକ ଭୟ ଲାଗିଲା, ଏବେ ଆପଣ କହିଲେ ଯେ ସତୁରୀ ପ୍ରତିଶତ ମଣିଷ ପୁଣି ଚାରି ଗୋଡ଼ିଆରେ ଯିବେ, ତ ଏବେ ଆମର କିଛି ଆଶା ଅଛି ନା ନାହିଁ?

**ଦାଦାଶ୍ରୀ :** ନା,ନା। ଆଶା ଆଉ ନାହିଁ, ଏଣୁ ଏବେ ସାବଧାନତା ରଖ କିଛି...

**ପ୍ରଶ୍ନକର୍ତ୍ତା :** ମହାତ୍ମାଙ୍କ କଥା କହୁଛି।

**ଦାଦାଶ୍ରୀ :** ମହାତ୍ମା, ଯଦି ମୋ ଆଜ୍ଞାରେ ରହିବେ ତେବେ କେହି ତାଙ୍କର ନାଁ ଦେବାକୁ ନାହିଁ ଏ ଦୁନିଆରେ।

ସେଥିପାଇଁ ଲୋକଙ୍କୁ କଣ କହୁଛି ଯେ ଏବେ ବି ସାବଧାନ ହୋଇପାରିବ ତେବେ ହୋଇଯାଅ। ଏବେ ବି କ୍ଷମା ମାଗିନେବ ତେବେ କ୍ଷମା ମାଗିବାର ରାସ୍ତା ଅଛି।

କେଉଁ ସମ୍ବନ୍ଧୀୟଙ୍କୁ ଆମେ ଏତେ ଲମ୍ବା ଚିଠି ଲେଖିଥିବା, ଏବଂ ଭିତରେ ଆମେ ବହୁତ ସାରା ଗାଳି ଲେଖିଥିବା, ପୁରା ଚିଠି କେବଳ ଗାଳିରେ ହିଁ ଭରିଥିବ, ଏବଂ ପୁଣି ତଳେ ଲେଖିବା ଯେ ଆଜି ୱାଇଫ୍ ସହ ଝଗଡା ହୋଇଯାଇଛି, ସେଥିପାଇଁ ତୁମକୁ ଏପରି ଲେଖିଦେଲି କିନ୍ତୁ ମୋତେ କ୍ଷମା କରିଦେବ। ତେବେ ସବୁ ଗାଳି ଭୁଲିଯିବ ନା ନାହିଁ? ଅର୍ଥାତ ପଢ଼ିବାବାଲା ସବୁ ଗାଳି ପଢ଼ିବ, ନିଜେ ଗାଳି ସ୍ୱୀକାର ବି କରିବ ଏବଂ କ୍ଷମା ମଧ୍ୟ କରିବ! ଅର୍ଥାତ ଏପରି ଅଟେ ଏହି ଦୁନିଆ। ସେଥିପାଇଁ ତ ମୁଁ କହେ ଯେ କ୍ଷମା ମାଗିନେବ, ତୁମ ଇଷ୍ଟଦେବଙ୍କ ପାଖରେ ମାଗିନେବ। ଆଉ ନହେଲେ ମୋ ପାଖରେ ମାଗିନେବ। ମୁଁ ତୁମର କ୍ଷମା କରାଇ ଦେବି। କିନ୍ତୁ ବହୁତ ବିଚିତ୍ର କାଳ ଆସୁଅଛି ଏବଂ ସେଥିରେ ଚନ୍ଦୁଭାଇ ବି ନିଜର ମନମାନି କରୁଛନ୍ତି। ତାହାର ଅର୍ଥ ହିଁ ନାହିଁ ନା। ଦାୟିତ୍ୱଭରା ଜୀବନ! ଏଣୁ ସତୁରୀ ପ୍ରତିଶତ ତ ମୁଁ ଡରି-ଡରି କହୁଛି। ଏବେ ବି ସାବଧାନ ହେବାକୁ ଥିବ ତେବେ ହୋଇଯାଅ। ତୁମକୁ ଏହା ଅନ୍ତିମ ଭରସା ଦେଉଅଛି। ଭୟଙ୍କର ଦୁଃଖ! ଏବେ ବି ପ୍ରତିକ୍ରମଣ ରୂପୀ ହତିୟାର ଦେଉଛି। ପ୍ରତିକ୍ରମଣ କରିବ ତେବେ ଏବେ ବି ବଞ୍ଚିବାର କିଛି ଆଶା ଅଛି ଏବଂ ମୋ ଆଜ୍ଞାରେ କରିବ ତେବେ ତୁମର ତୁରନ୍ତ କଲ୍ୟାଣ ହୋଇଯିବ। ପାପ ଭୋଗିବାକୁ ପଡ଼ିବ କିନ୍ତୁ ଏତେସାରା ନୁହେଁ।

ହଜାର ଲୋକଙ୍କ ଉପସ୍ଥିତିରେ କେହି କହେ ଯେ, 'ଚନ୍ଦୁଭାଇଙ୍କର ଅକଲ

ନାହିଁ ।' ସେତେବେଳେ ଯଦି ତୁମକୁ ଆଶୀର୍ବାଦ ଦେବାକୁ ମନ ହୁଏ ଯେ 'ଓହୋହୋ ! ମୁଁ ଜାଣିଥିଲି ଯେ ଚନ୍ଦୁଭାଇଙ୍କର ଅକଲ ନାହିଁ କିନ୍ତୁ ଏହା ତ ସେ ମଧ୍ୟ ଜାଣିଛନ୍ତି', ତେବେ ଜୁଦାପଣ(ନିଜେ ଚନ୍ଦୁଭାଇଙ୍କଠାରୁ ଅଲଗା) ରହିବ !

ଏହି ଚନ୍ଦୁଭାଇଙ୍କୁ ମୁଁ ପ୍ରତିଦିନ କହେ ଯେ 'ଆସନ୍ତୁ ଚନ୍ଦୁଭାଇ, ଆସନ୍ତୁ ।' ଏବଂ ପୁଣି ଦିନେ କିଛି କହେ ନାହିଁ, ତାହାର କାରଣ କ'ଣ ? ତାଙ୍କୁ ବିଚାର ଆସିବ ଯେ ଆଜି ମୋତେ ଆଗକୁ ଡାକିଲେ ନାହିଁ । ମୁଁ ତା'କୁ ଚଢ଼ାଏ, ପକାଏ, ଚଢ଼ାଏ ଏବଂ ପକାଏ ଏହିପରି କରୁ କରୁ ସେ ଜ୍ଞାନ ପ୍ରାପ୍ତ କରେ । ଜ୍ଞାନ ପାଇବା ପାଇଁ ଅଟେ ଏସବୁ କ୍ରିୟା ମୋର । ମୋର ପ୍ରତ୍ୟେକ କ୍ରିୟା ଜ୍ଞାନ ପାଇବା ପାଇଁ ଅଟେ । ପ୍ରତ୍ୟେକଙ୍କ ସହିତ ଅଲଗା ଅଲଗା ରୁହେ, ତା'ର ପ୍ରକୃତି ଖାଲି ହୋଇଯିବା ହିଁ ଦରକାର ନା ! ପ୍ରକୃତି ତ ଖଲାସ କରିବାକୁ ହିଁ ପଡ଼ିବ । ପର ଜିନିଷ ଆମ ପାଖରେ କେବେ ପର୍ଯ୍ୟନ୍ତ ରହିବ ?

**ପ୍ରଶ୍ନକର୍ତ୍ତା :** ସତ କଥା, ପ୍ରକୃତି ଖଲାସ କରିବା ବିନା ଛୁଟକାରା ହିଁ ନାହିଁ ।

**ଦାଦାଶ୍ରୀ :** ହଁ । ମୋର ତ ପ୍ରକୃତି(ବିଧାତା) ଖଲାସ କରିଦେଲା, ମୋର ତ ଜ୍ଞାନ ଦ୍ୱାରା ଖଲାସ ହେଲା । ଆଉ ତୁମର ତ ମୁଁ କାଢ଼ିବି ତେବେଯାଇ ନା, ନିମିତ୍ତ ଅଟେ ନା ! !

## ୧୯. ମିଛର ଅଭ୍ୟାସକୁ...

**ପ୍ରଶ୍ନକର୍ତ୍ତା :** ଆମେ ଯଦି ମିଛ କହିଥିବୁ ତେବେ ତାହା ମଧ୍ୟ କର୍ମ ବନ୍ଧାହେଲା କୁହାଯିବ ନା ?

**ଦାଦାଶ୍ରୀ :** ବିଲକୁଲ ! କିନ୍ତୁ ମିଛ କହୁଛ, ତାହା ଅପେକ୍ଷା ମିଛ କହିବାର ଭାବ କରୁଛ, ତାହା ଭାରୀ କର୍ମ କୁହାଯିବ । ମିଛ କହିବା ତାହା ତ କର୍ମଫଳ ଅଟେ । କିନ୍ତୁ ମିଛ କହିବାର ଭାବ, ମିଛ କହିବାର ଆମର *ନିଶ୍ଚୟ*, ତାହା କର୍ମବନ୍ଧନ କରାଏ । ତୁମକୁ ବୁଝାପଡ଼ିଲା ? ଏହି ବାକ୍ୟ ତୁମର କିଛି ହେଲ୍ପ କରିବ ? କ'ଣ ହେଲ୍ପ କରିବ ?

**ପ୍ରଶ୍ନକର୍ତ୍ତା :** ମିଛ କହିବା ବନ୍ଦ କରିବା ଉଚିତ ।

**ଦାଦାଶ୍ରୀ :** ନା, ମିଛ କହିବାର ଅଭିପ୍ରାୟ ହିଁ ଛାଡ଼ିଦେବା ଉଚିତ । ଆଉ ମିଛ କହି ହୋଇଯାଏ ତେବେ ପଶ୍ଚାତାପ କରିବା ଉଚିତ ଯେ 'କ'ଣ କରିବି ? ! ଏପରି ମିଛ କହିବା ଉଚିତ ନୁହେଁ ।' କିନ୍ତୁ ମିଛ କହିବା ବନ୍ଦ ହେବନାହିଁ, କିନ୍ତୁ ସେ ଅଭିପ୍ରାୟ ବନ୍ଦ ହୋଇଯିବ । 'ଏବେ ଆଜିଠାରୁ ମିଛ କହିବି ନାହିଁ, ମିଛ କହିବା ତାହା ମହାପାପ ଅଟେ, ମହା ଦୁଃଖଦାୟୀ ଅଟେ, ମିଛ କହିବା ତାହା ହିଁ ବନ୍ଧନ ଅଟେ ।'

ଏପରି ଅଭିପ୍ରାୟ ଯଦି ତୁମର ହୋଇଗଲା ତେବେ ମିଛ କହିବା ସମ୍ବନ୍ଧିତ ସମସ୍ତ ପାପ ତୁମର ବନ୍ଦ ହୋଇଯିବ ।

'ରିଲେଟିଭ ଧର୍ମ' କିପରି ହେବା ଉଚିତ ଯେ ମିଛ କହିଦେଲ ତେବେ କୁହ, କିନ୍ତୁ ତାହାର ପ୍ରତିକ୍ରମଣ କର ।

## ୨୦. ଜାଗୃତି, ବାଣୀ ବାହାରେ ସେତେବେଳେ...

ମନର ଏତେ ଅସୁବିଧା ନାହିଁ, ବାଣୀର ଅସୁବିଧା ଅଛି । କାରଣ ମନ ତ ଗୁପ୍ତ ରୀତିରେ ଚାଲୁଥାଏ, କିନ୍ତୁ ବାଣୀ ତ ସାମ୍ନାବାଲାର ଛାତିରେ ଘା କରେ । ଏଣୁ ଏହି ବାଣୀ ଦ୍ୱାରା ଯେଉଁ ଯେଉଁ ଲୋକଙ୍କୁ ଦୁଃଖ ହୋଇଥିବ ସେ ସମସ୍ତଙ୍କର କ୍ଷମା ମାଗୁଛି । ଏହିପରି ପ୍ରତିକ୍ରମଣ କରିପାର ।

**ପ୍ରଶ୍ନକର୍ତ୍ତା :** ପ୍ରତିକ୍ରମଣ ଦ୍ୱାରା ବାଣୀର ସମସ୍ତ ଦୋଷ କ୍ଷମା ହୋଇଯିବ ନା ?

**ଦାଦାଶ୍ରୀ :** ଦୋଷର ଅସ୍ତିତ୍ୱ ରହିବ, କିନ୍ତୁ ଜଳି ଯାଇଥିବା ଦଉଡ଼ି ସମାନ ରହିବ । ଅର୍ଥାତ ଆସନ୍ତା ଜନ୍ମରେ ହାତ ଲଗାଇବା ମାତ୍ରେ ସବୁ ଉଡ଼ିଯିବ, ପ୍ରତିକ୍ରମଣ ଦ୍ୱାରା । ସେଥିରୁ ରସ ସବୁ ଉଡ଼ିଯିବ ।

କର୍ତ୍ତାର ଆଧାର ରହିବ ତେବେ କର୍ମବନ୍ଧନ ହେବ । ଏବେ ତୁମେ କର୍ତ୍ତା ନୁହଁ, ଏବେ ପୂର୍ବ କର୍ମ ଯାହା ଥିଲା ସେସବୁ ଫଳ ଦେଇ ଚାଲିଯିବେ । ନୂଆ କର୍ମବନ୍ଧନ ହେବ ନାହିଁ ।

**ପ୍ରଶ୍ନକର୍ତ୍ତା :** ମଣିଷ ଆକୁଳିତ ହୋଇ କୁହେ, ତେବେ କ'ଣ ତାହା ଅତିକ୍ରମଣ ହେଲା ନାହିଁ ?

**ଦାଦାଶ୍ରୀ :** ଅତିକ୍ରମଣ ହିଁ କୁହାଯିବ ।

**ପ୍ରଶ୍ନକର୍ତ୍ତା :** କାହାକୁ ଦୁଃଖ ହେବା ପରି ବାଣୀ ବାହାରିଗଲା ଏବଂ ପ୍ରତିକ୍ରମଣ ନ କଲୁ ତେବେ କ'ଣ ହେବ ?

**ଦାଦାଶ୍ରୀ :** ଏପରି ବାଣୀ ବାହାରିଗଲା, ତେବେ ତାହାଦ୍ୱାରା ତ ସାମ୍ନାବାଲାକୁ ଆଘାତ ଲାଗିବ । ଅର୍ଥାତ ତା'କୁ ଦୁଃଖ ହେବ । ସାମ୍ନାବାଲାକୁ ଦୁଃଖ ହେଉ ଏହା ଆମକୁ କିପରି ଭଲ ଲାଗିବ ?

**ପ୍ରଶ୍ନକର୍ତ୍ତା :** ତାହାଦ୍ୱାରା ବନ୍ଧନ ହେବ ?

**ଦାଦାଶ୍ରୀ :** ଏହା ନିୟମର ବିରୁଦ୍ଧ କୁହାଯିବ ନା? ନିୟମ ବିରୁଦ୍ଧ ନା? ନିୟମର ବିରୁଦ୍ଧ ତ ନ ହେବା ହିଁ ଉଚିତ ନା? ମୋ ଆଜ୍ଞାର ଯଦି ପାଳନ କର, ତାହା ଧର୍ମ କୁହାଯିବ । ଆଉ ପ୍ରତିକ୍ରମଣ କରିବାରେ କ୍ଷତି କ'ଣ ଆମକୁ? କ୍ଷମା ମାଗିନିଅ ଏବଂ ଆଉ ଏପରି କରିବି ନାହିଁ, ଏପରି ଭାବ ମଧ୍ଯ ରଖିବାର ଅଛି । ବାସ୍ କେବଳ ଏତିକି । ସଂକ୍ଷେପରେ କରିଦେବାର ଅଛି । ସେଥିରେ ଭଗବାନ କ'ଣ କରିବେ? ସେଥିରେ କେଉଁଠି ନ୍ୟାୟ ଦେଖିବାକୁ ହୁଏ? ଯଦି ବ୍ୟବହାରକୁ ବ୍ୟବହାର ବୁଝିଲା, ତେବେ ସେ ନ୍ୟାୟ ବୁଝିଗଲା! ପଡ଼ୋଶୀ କାହିଁକି ଓଲଟା କହିଗଲେ? କାରଣ ଆମ ବ୍ୟବହାର ସେମିତି ଥିଲା, ସେଥିପାଇଁ । ଆଉ ଆମ ଦ୍ଵାରା ଯଦି ଓଲଟା ବାଣୀ ବାହାରିଯାଏ ତେବେ ତାହା ସାମ୍ନାବାଲାର ବ୍ୟବହାରର ଅଧୀନ ଅଟେ । କିନ୍ତୁ ଆମକୁ ତ ମୋକ୍ଷ ଦରକାର । ସେଥିପାଇଁ ତାହାର ପ୍ରତିକ୍ରମଣ କରିନେବା ଉଚିତ ।

**ପ୍ରଶ୍ନକର୍ତ୍ତା :** ସାମ୍ନାବାଲା ଓଲଟା କୁହେ ସେତେବେଳେ ଆପଣଙ୍କ ଜ୍ଞାନ ଦ୍ଵାରା ସମାଧାନ ରହେ, କିନ୍ତୁ ମୁଖ୍ୟ ପ୍ରଶ୍ନ ଏହା ଯେ ଆମଦ୍ଵାରା ଯେବେ କଟୁବଚନ ବାହାରେ, ସେହି ସମୟରେ ଆମେ 'ବାଣୀ ପର ଅଟେ ଏବଂ ପରାଧୀନ ଅଟେ' ଏହି ବାକ୍ୟର ଆଧାର ନେଉ ତେବେ ଆମକୁ ଓଲଟା ଲାଇସେନ୍ସ ମିଳିଯାଏ ।

**ଦାଦାଶ୍ରୀ :** ଏହି ବାକ୍ୟର ଆଧାର ନେଇ ପାରିବା ହିଁ ନାହିଁ । ସେ ସମୟରେ ତୁମକୁ ପ୍ରତିକ୍ରମଣର ଆଧାର ଦେଇଛି । ସାମ୍ନାବାଲାକୁ ଦୁଃଖ ହେବାପରି କହି ଦେଇଥିବା ତେବେ ପ୍ରତିକ୍ରମଣ କରିନେବା ।

ଆଉ ଯେତେବେଳେ ସାମ୍ନାବାଲା କିଛି ବି କୁହେ, ସେତେବେଳେ ବାଣୀ ପର ଅଟେ ଏବଂ ପରାଧୀନ ଅଟେ, ତାହାକୁ ସ୍ଵୀକାର କଲ, ତେବେ ତୁମକୁ ସାମ୍ନାବାଲାର ଦୁଃଖ ରହିଲା ହିଁ ନାହିଁ ନା?

**ପ୍ରଶ୍ନକର୍ତ୍ତା :** ପରମାର୍ଥ ହେତୁ ଅଳ୍ପ ମିଛ କୁହେ, ତେବେ ତାହାର ଦୋଷ ଲାଗିବ?

**ଦାଦାଶ୍ରୀ :** ପରମାର୍ଥ ଅର୍ଥାତ ଆତ୍ମା ପାଇଁ ଯାହା କିଛି ବି କରନ୍ତି, ତାହାର ଦୋଷ ଲାଗେ ନାହିଁ । ଏବଂ ଦେହ ପାଇଁ ଯାହା କିଛି ବି କରନ୍ତି, ଖରାପ କରନ୍ତି ତେବେ ଦୋଷ ଲାଗେ ଏବଂ ଭଲ କରନ୍ତି ତେବେ ଗୁଣ ଲାଗେ । ଆତ୍ମା ପାଇଁ ଯାହା କିଛି ବି କରାଯାଏ ସେଥିରେ ଅସୁବିଧା ନାହିଁ । ହଁ, ଆତ୍ମହେତୁ ହୋଇଥିବ, ତାହା ସମ୍ବନ୍ଧିତ ଯାହା-ଯାହା କାର୍ଯ୍ୟ ହୋଇଥିବ, ସେଥିରେ କିଛି ଦୋଷ ନାହିଁ, ସାମ୍ନାବାଲାକୁ ଆମ ନିମନ୍ତେ ଦୁଃଖ ପହଞ୍ଚେ ତେବେ ଦୋଷ ଲାଗେ ।

**ପ୍ରଶ୍ନକର୍ତ୍ତା :** ପ୍ରତିକ୍ରମଣର ପ୍ରଭାବ ନ ପଡ଼ିବାର କାରଣ କ'ଣ ? ଆମେ ପୁରା ଭାବରେ କଲୁ ନାହିଁ ନା ସାମ୍ନାବ୍ୟକ୍ତିର ଆବରଣ ଅଛି ?

**ଦାଦାଶ୍ରୀ :** ଆମକୁ ସାମ୍ନାବ୍ୟକ୍ତିର ଦେଖିବାର ନାହିଁ । ସେ ତ ପାଗଳ ବି ହୋଇପାରେ । ଆମ ନିମିତ୍ତରୁ ତା'କୁ ଦୁଃଖ ନହେବା ଉଚିତ, ବାସ୍ !

**ପ୍ରଶ୍ନକର୍ତ୍ତା :** ଅର୍ଥାତ କୌଣସି ବି ପ୍ରକାରେ ଯଦି ତା'କୁ ଦୁଃଖ ହୋଇଯାଏ ତେବେ ଆମେ ତାହାର ସମାଧାନ କରିବାର ପ୍ରୟାସ କରିବା ଉଚିତ ।

**ଦାଦାଶ୍ରୀ :** ଯଦି ତା'କୁ ଦୁଃଖ ହୋଇଯାଏ ତେବେ ସମାଧାନ ତ ଅବଶ୍ୟ କରିବା ଉଚିତ । ତାହା ଆମର ରେସ୍ପନ୍ସିବିଲିଟୀ ଅଟେ । ହଁ, ଦୁଃଖ ନହେଉ, ସେଥିପାଇଁ ତ ଆମ ଜୀବନ ।

**ପ୍ରଶ୍ନକର୍ତ୍ତା :** କିନ୍ତୁ ମାନି ନିଅନ୍ତୁ ଯେ ଏପରି କରିବା ପରେ ମଧ୍ୟ ସାମ୍ନାବାଲାକୁ ସମାଧାନ ହେଉ ନଥିବ, ତେବେ ପୁଣି ନିଜର ଦାୟିତ୍ୱ କେତେ ?

**ଦାଦାଶ୍ରୀ :** ଯଦି ହୋଇପାରିବ ତେବେ ସାମ୍ନାସାମ୍ନୀ ଯାଇ ଆଖିରେ ନମ୍ରତା ଦେଖାଇବ । ତଥାପି ଏପରି କ୍ଷମା ମାଗିଲେ ଯଦି ଓଲଟା ଚାପୁଡ଼ା ମାରେ ତେବେ ବୁଝିନେବ ଯେ ଇଏ ନିଛ ବର୍ଗର ଅଟେ । ତଥାପି *ନିକାଲ* କରିବାର ଅଛି । କ୍ଷମା ମାଗିଲେ ଯଦି ଚାପୁଡ଼ା ମାରେ ତେବେ ବୁଝିବ ଯେ ଏହା ସହିତ ଭୁଲ ତ ହୋଇଛି, କିନ୍ତୁ ମଣିଷ ନିଛ ବର୍ଗର ଅଟେ, ଏଣୁ ନଇଁବା ବନ୍ଦ କରିଦିଅ ।

**ପ୍ରଶ୍ନକର୍ତ୍ତା :** ହେତୁ ଭଲ ଥିବ ତେବେ ପୁଣି ପ୍ରତିକ୍ରମଣ କାହିଁକି କରିବା ଉଚିତ ?

**ଦାଦାଶ୍ରୀ :** ପ୍ରତିକ୍ରମଣ ତ କରିବାକୁ ପଡ଼ିବ, ତା'କୁ ଦୁଃଖ ହୁଏ ନା । ଆଉ ବ୍ୟବହାରରେ ଲୋକେ କହିବେ ଯେ 'ଦେଖ ଏ ଭଉଣି ତା' ସ୍ୱାମୀକୁ କେମିତି ଧମକଉଛି ।' ପୁଣି ପ୍ରତିକ୍ରମଣ କରିବାକୁ ପଡ଼ିବ । ଯାହା ଆଖିରେ ଦେଖାଯାଏ ତାହାର ପ୍ରତିକ୍ରମଣ କରିବାର ଅଛି । ଭିତରେ ତୁମ ହେତୁ ସୁନା ପରି ଥାଉ କିନ୍ତୁ କେଉଁ କାମର ? ଚଳିବ ନାହିଁ ସେ ହେତୁ । ହେତୁ ବିଲକୁଲ ସୁନାପରି ହୋଇଥାଉ ତଥାପି ଆମକୁ ପ୍ରତିକ୍ରମଣ କରିବାକୁ ପଡ଼ିବ । ଭୁଲ ହେବା ମାତ୍ରେ ପ୍ରତିକ୍ରମଣ କରିବାକୁ ପଡ଼ିବ । ଏ ସବୁ ମହାତ୍ମାଙ୍କର ଇଚ୍ଛା, ଏବେ ଜଗତକଲ୍ୟାଣ କରିବାର ଭାବନା ହୋଇଛି । ହେତୁ ଭଲ କିନ୍ତୁ ତଥାପି ଚଳିବ ନାହିଁ । ପ୍ରତିକ୍ରମଣ ତ ପ୍ରଥମେ କରିବାକୁ ହେବ ।

କପଡ଼ା ଉପରେ ଦାଗ ଲାଗିଯାଏ, ତେବେ ଧୋଇ ଦେଉଛ ନା ? ସେହିପରି ଏହା ମଧ୍ୟ କପଡ଼ା ଉପରେ ଲାଗିଥିବା ଦାଗ ଅଟେ ।

**ପ୍ରଶ୍ନକର୍ତ୍ତା :** ବ୍ୟବହାରରେ କେହି ଭୁଲ କରୁଥିବ ତେବେ ତା'କୁ ସାମାନ୍ୟ ଗାଳି କରିବାକୁ ପଡ଼େ, ଏହାଦ୍ୱାରା ତା'କୁ ଦୁଃଖ ହୁଏ । ତେବେ ତାହାର *ନିକାଲ୍* କିଭଳି କରିବା ଉଚିତ ?

**ଦାଦାଶ୍ରୀ :** ବ୍ୟବହାରରେ ସାମାନ୍ୟ ଗାଳି କରିବାକୁ ପଡ଼େ, କିନ୍ତୁ ସେଥିରେ ଅହଂକାର ସହିତ ହୁଏ ସେଥିପାଇଁ ତାହାର ପ୍ରତିକ୍ରମଣ କରିବା ଉଚିତ ।

**ପ୍ରଶ୍ନକର୍ତ୍ତା :** ନ କହିବୁ ତେବେ ସେମାନେ ମୁଣ୍ଡରେ ଚଢ଼ିଯିବେ ?

**ଦାଦାଶ୍ରୀ :** କହିବାକୁ ତ ପଡ଼ିବ, କିନ୍ତୁ କହିବା ଆସିବା ଉଚିତ । କହିବା ଆସେନାହିଁ, ବ୍ୟବହାର ଆସେ ନାହିଁ, ସେଥିପାଇଁ ଅହଂକାର ସହିତ କହିଦିଅନ୍ତି । ସେଥିପାଇଁ ପରେ ତାହାର ପ୍ରତିକ୍ରମଣ କରିବାର ଅଛି । ତୁମେ ସାମ୍ନାବାଲାକୁ ଗାଳିକରିବ ତେବେ ତାହାଦ୍ୱାରା ତା'କୁ ଖରାପ ତ ଲାଗିବ, କିନ୍ତୁ ବାରମ୍ବାର ଯଦି ତାହାର ପ୍ରତିକ୍ରମଣ କରିବ ତେବେ ଛଅମାସ, ବାରମାସରେ ବାଣୀ ଏପରି ବାହାରିବ ଯେ ସାମ୍ନାବାଲାକୁ ମିଠା ଲାଗିବ ।

ଏବେ ମୁଁ ଯଦି କାହାର ଥଟ୍ଟା କରୁଛି, ତେବେ ତାହାର ବି ମୋତେ ପ୍ରତିକ୍ରମଣ କରିବାକୁ ପଡ଼େ । ମୋର ଏମିତି ଚଳିବ ନାହିଁ ।

**ପ୍ରଶ୍ନକର୍ତ୍ତା :** ତାହା ତ ମନୋରଞ୍ଜନ କୁହାଯାଏ । ଏପରି ତ ହେଉଥାଏ ।

**ଦାଦାଶ୍ରୀ :** ନା, କିନ୍ତୁ ତଥାପି ମୋତେ ପ୍ରତିକ୍ରମଣ କରିବାକୁ ପଡ଼େ । ତୁମେ ନ କରିବ ତେବେ ଚଳିବ । କିନ୍ତୁ ମୋତେ ତ କରିବାକୁ ପଡ଼ିବ । ନହେଲେ ମୋର ଏ ଜ୍ଞାନ, ଏ 'ଟେପ୍ ରେକର୍ଡ଼' ବାଜୁଛି (ଯେଉଁ ବାଣୀ ବାହାରୁଛି) ନା, ତାହା ପୁଣି ଅସ୍ୱଷ୍ଟ ବାହାରିବ ।

ନହେଲେ, ମୁଁ ତ ସବୁ ପ୍ରକାରର ଥଟ୍ଟା କରିଥିଲି । ସର୍ବଦା, ସବୁ ପ୍ରକାରର ଥଟ୍ଟା କିଏ କରିପାରେ ? ବହୁତ ଟାଇଟ୍ ବ୍ରେନ (ଶକ୍ତିଶାଳୀ ମସ୍ତିଷ୍କ) ହୋଇଥିବ, ସେ କରେ । ମୁଁ ତ ମସ୍ତିରେ ଆସି ସମସ୍ତଙ୍କର ଥଟ୍ଟା କରୁଥିଲି । ଭଲ ଭଲ ଲୋକଙ୍କର, ବଡ଼ ବଡ଼ ଓକିଲଙ୍କର, ଡକ୍ଟରଙ୍କର ପରିହାସ କରୁଥିଲି । ଏବେ, ସେ ସମସ୍ତ ଅହଂକାର ତ ଭୁଲ ହିଁ ଥିଲା ନା ! ତାହା ମୋ ବୁଦ୍ଧିର ଦୁରୁପଯୋଗ ହେଲା ନା ! ପରିହାସ କରିବା ତାହା ବୁଦ୍ଧିର ସଙ୍କେତ ଅଟେ ।

**ପ୍ରଶ୍ନକର୍ତ୍ତା :** ପରିହାସ କରିବାରେ କ'ଣ କ'ଣ ଜୋଖିମ ଆସେ ? କେଉଁ ପ୍ରକାରର ଜୋଖିମ ଆସେ ?

**ଦାଦାଶ୍ରୀ :** ଏପରି ଅଟେ, କାହାକୁ ଚଟକଣା ମାରିଥିବ ଏବଂ ତାହାଦ୍ୱାରା ଯେଉଁ ଜୋଖିମ ଆସେ ତାହାଠାରୁ ଅନେକ ଗୁଣା ଜୋଖିମ ପରିହାସ କରିବାରେ ଅଛି । ତା' ବୁଦ୍ଧି ପହଞ୍ଚି ପାରିଲା ନାହିଁ, ସେଥିପାଇଁ ତୁମେ ତା'କୁ ତୁମ ବୁଦ୍ଧିର ଲାଇଟ୍ ଦ୍ୱାରା ନିଜ କବ୍ଜାରେ କଲ ।

**ପ୍ରଶ୍ନକର୍ତ୍ତା :** ଯାହାକୁ ନୂଆ ଟେପ୍ କରିବାର ନଥିବ, ତା'ପାଇଁ କେଉଁ ରାସ୍ତା ?

**ଦାଦାଶ୍ରୀ :** କିଛି ବି ସ୍ପନ୍ଦନ ହେବାକୁ ଦେବ ନାହିଁ । ସବୁକିଛି ଦେଖି ଚାଲିବ । କିନ୍ତୁ ଏପରି ହୁଏ ନାହିଁ ନା ! ଇଏ ବି ମେଶିନ୍ ହିଁ ଅଟେ ଏବଂ ପରାଧୀନ ମଧ୍ୟ । ସେଥିପାଇଁ ମୁଁ ଅଲଗା ରାସ୍ତା ଦେଖାଏ ଯେ ଯଦି ଟେପ୍ ହୋଇଯାଏ ତେବେ ତୁରନ୍ତ ଧୋଇଦେବ ତେବେ ଚଳିବ । ଏ ପ୍ରତିକ୍ରମଣ ତ ଧୋଇବାର ସାଧନ ଅଟେ । ଏହାଦ୍ୱାରା ଗୋଟେ-ଅଧେ ଜନ୍ମରେ ପରିବର୍ତ୍ତନ ହେବାପରେ ସବୁ କହିବା ବନ୍ଦ ହୋଇଯିବ ।

**ପ୍ରଶ୍ନକର୍ତ୍ତା :** ଶୁଦ୍ଧାତ୍ମାର ଲକ୍ଷ୍ୟ ହେବାପରେ ନିରନ୍ତର ପ୍ରତିକ୍ରମଣ ଚାଲୁ ହିଁ ରହୁଛି ।

**ଦାଦାଶ୍ରୀ :** ସେଥିପାଇଁ ତୁମର ଦାୟିତ୍ୱଭାର ରହେ ନାହିଁ । ଯାହା କୁହ ତାହାର ପ୍ରତିକ୍ରମଣ ହୋଇଯାଏ ଏଣୁ ଦାୟିତ୍ୱ ରହିବ ନାହିଁ ନା ! କଡ଼ା କହିବ କିନ୍ତୁ ରାଗ୍-ଦ୍ୱେଷ ରହିତ କହିବ । କଡ଼ା କହି ହୋଇଯିବ ତେବେ ତୁରନ୍ତ ପ୍ରତିକ୍ରମଣ କରିନେବ ।

ମନ-ବଚନ-କାୟାର ଯୋଗ, ଭାବକର୍ମ-ଦ୍ରବ୍ୟକର୍ମ-ନୋକର୍ମ, ଚନ୍ଦୁଭାଇ ଏବଂ ଚନ୍ଦୁଭାଇ ନାମର ସର୍ବମାୟାରୁ ଭିନ୍ନ ଏପରି ଶୁଦ୍ଧାତ୍ମାଙ୍କୁ ସ୍ମରଣ କରି କହିବ, 'ହେ ଶୁଦ୍ଧାତ୍ମା ଭଗବାନ ! ମୁଁ ବଡ଼ ପାଟିରେ କହିଦେଲି, ଭୁଲ ହୋଇଗଲା । ସେଥିପାଇଁ ତାହାର କ୍ଷମା ମାଗୁଛି । ଏବଂ ସେ ଭୁଲ ଏବେ ଆଉ କରିବି ନାହିଁ ଏପରି *ନିଶ୍ଚୟ* କରୁଛି । ଏପରି ଭୁଲ ନ କରିବା ପାଇଁ ଶକ୍ତି ଦିଅନ୍ତୁ ।' ଶୁଦ୍ଧାତ୍ମାଙ୍କୁ ସ୍ମରଣ କଲ ଅଥବା ଦାଦାଙ୍କୁ ସ୍ମରଣ କଲ ଏବଂ କହିଲ ଯେ, ଏ ଭୁଲ ହୋଇଗଲା ତାହା ଆଲୋଚନା ଏବଂ ସେହି ଭୁଲକୁ ଧୋଇଦେବା ତାହା ପ୍ରତିକ୍ରମଣ ଏବଂ ଏପରି ଭୁଲ ଆଉ କରିବି ନାହିଁ ଏପରି *ନିଶ୍ଚୟ* କରିବା, ତାହା ପ୍ରତ୍ୟାଖ୍ୟାନ ।

**ପ୍ରଶ୍ନକର୍ତ୍ତା :** ପ୍ରତିକ୍ରମଣ କରିବା ପରେ ଆମ ବାଣୀ ବହୁତ ଭଲ ହୋଇଯିବ, ଏହି ଜନ୍ମରେ ?

**ଦାଦାଶ୍ରୀ :** ତାହା ପରେ ତ କିଛି ଅଲଗା ପ୍ରକାରର ହେବ । ମୋ ବାଣୀ ସବୁଠାରୁ ଉଚ୍ଚ ପ୍ରକାରର ବାହାରୁଛି ତାହାର କାରଣ ପ୍ରତିକ୍ରମଣ ହିଁ ଅଟେ ଏବଂ ନିର୍ବିବାଦୀ ଅଟେ ତାହାର କାରଣ ମଧ୍ୟ ପ୍ରତିକ୍ରମଣ ହିଁ ଅଟେ । ନଚେତ ବିବାଦ ହିଁ ହୁଏ । ସର୍ବତ୍ର ବିବାଦୀ ବାଣୀ ହିଁ ଥାଏ । ବ୍ୟବହାର ଶୁଦ୍ଧି ବିନା ସ୍ୟାଦବାଦ ବାଣୀ ବାହାରିବ ହିଁ ନାହିଁ । ପ୍ରଥମେ ବ୍ୟବହାର ଶୁଦ୍ଧି ହେବା ଦରକାର ।

## ୨୧. ଯାଏ ପ୍ରକୃତି ଦୋଷ ଏହିପରି...

ଏହି ସତ୍‌ସଙ୍ଗର ପଏଜନ୍ ପିଇବା ଭଲ କିନ୍ତୁ ବାହାରର ଅମୃତ ପିଇବା ଠିକ୍ ନୁହେଁ । କାରଣ ଏ ପଏଜନ୍ ପ୍ରତିକ୍ରମଣବାଲା ଅଟେ । ମୁଁ ଜହରର ସମସ୍ତ ପିଆଲା ପିଇ ମହାଦେବଜୀ ହୋଇଛି ।

**ପ୍ରଶ୍ନକର୍ତ୍ତା :** ଆପଣଙ୍କ ପାଖକୁ ଆସିବା ପାଇଁ ବହୁତ ଭାବୁଛି କିନ୍ତୁ ଆସିପାରୁ ନାହିଁ ।

**ଦାଦାଶ୍ରୀ :** ତୁମ ହାତରେ କ'ଣ ସତ୍ତା ଅଛି ? ଆସିବା ପାଇଁ ଭାବୁଛ, କିନ୍ତୁ ଆସି ପାରୁନାହଁ ତେବେ ସେଥିପାଇଁ ମନରେ ଦୁଃଖ ରହିବା ଉଚିତ । ଆମେ ଚନ୍ଦୁଭାଇଙ୍କୁ କହିବା ଯେ ଚନ୍ଦୁଭାଇ ପ୍ରତିକ୍ରମଣ କର, ଜଲଦୀ ରାସ୍ତା ବାହାରିବ । ଯାଇହେଉନାହିଁ ଏଣୁ ପ୍ରତିକ୍ରମଣ କର । ପ୍ରତ୍ୟାଖ୍ୟାନ କର । ଏପରି ଭୁଲ-ଭାଲ ହୋଇଛି ଏଣୁ ଏବେ ଆଉ ଭୁଲ-ଭାଲ କରିବି ନାହିଁ ।

ଆଉ ଏବେ ଯେଉଁ ଭାବ ଆସୁଛି ସେ ଭାବ କାହିଁକି ବେଶୀ ଆସୁଛି ? ଭାବ ଆସିବାର କାରଣ ଏହା ଯେ କମିଙ୍ଗ୍ ଇଭେଣ୍ଟସ୍ କାଷ୍ଟ ଦେୟର ସ୍ୟାଡୋଜ୍ ବିଫୋର୍ । ଅର୍ଥାତ ଏସବୁ କଥା ହେବାକୁ ଅଛି ।

**ପ୍ରଶ୍ନକର୍ତ୍ତା :** ଚିନ୍ତା ହୋଇଯାଏ । ତାହାର ପ୍ରତିକ୍ରମଣ କିପରି କରିବା ଉଚିତ ?

**ଦାଦାଶ୍ରୀ :** 'ମୋ ଅହଂକାର କାରଣରୁ ଚିନ୍ତା ହେଉଛି । ମୁଁ କ'ଣ ତାହାର କର୍ତ୍ତା ? ଏଣୁ ଦାଦା ଭଗବାନ ! କ୍ଷମା କରନ୍ତୁ ।' ଏପରି କିଛି କରିବାକୁ ତ ପଡ଼ିବ ନା ? ତାହା ବିନା ଚଳିବ କି ?

**ପ୍ରଶ୍ନକର୍ତ୍ତା :** 'ବହୁତ ଥଣ୍ଡା ହେଉଛି, ବହୁତ ଥଣ୍ଡା ହେଉଛି' ଯଦି ଆମେ

ଏପରି କହୁ ତେବେ ତାହା ପ୍ରକୃତିର ବିରୁଦ୍ଧରେ କହିଲୁ ତେବେ କ'ଣ ତାହାର ପ୍ରତିକ୍ରମଣ କରିବା ଉଚିତ ?

**ଦାଦାଶ୍ରୀ :** ନା, ପ୍ରତିକ୍ରମଣ ତ ଯେଉଁଠି ରାଗ୍-ଦ୍ୱେଷ ହେଉଥିବ, 'ଫାଇଲ୍(ଋଣାନୁବନ୍ଧ ବାଲା ବ୍ୟକ୍ତି)' ଥିବ, ସେଠି କରିବାର ଅଛି । କଢ଼ି ଲୁଣିଆ ହୋଇଥିବ ତେବେ ତାହାର ପ୍ରତିକ୍ରମଣ କରିବାର ନାହିଁ, କିନ୍ତୁ ଯିଏ ଲୁଣିଆ କରିଛି ତା'ର ପ୍ରତିକ୍ରମଣ କରିବାକୁ ହେବ । ପ୍ରତିକ୍ରମଣ ଦ୍ୱାରା ସାମ୍ନାବାଲାର ପରିଣତି ବଦଳେ ।

କେଉଁଠି ପରିଶ୍ରା କରିବାକୁ ଗଲି ସେଠି ଏକ ପିମ୍ପୁଡ଼ି ବହିଗଲା ତେବେ ମୁଁ ପ୍ରତିକ୍ରମଣ କରେ । ମୁଁ ଉପଯୋଗ ଭୁଲେ ନାହିଁ । ବହିଗଲା ତାହା 'ଡିସ୍‌ଚାର୍ଜ' ରୂପ ଅଟେ କିନ୍ତୁ ସେହି ସମୟରେ ଅତିକ୍ରମଣ ଦୋଷ କାହିଁକି ହେଲା ? ଜାଗୃତି ମନ୍ଦ କାହିଁକି ହେଲା ? ତାହାର ଦୋଷ ଲାଗେ ।

ପଢ଼ିବା ସମୟରେ ପୁସ୍ତକକୁ ନମସ୍କାର କରି କହିବ ଯେ, 'ଦାଦାଜୀ ମୋତେ ପଢ଼ିବା ପାଇଁ ଶକ୍ତି ଦିଅନ୍ତୁ ।' ଆଉ ଯଦି କେତେବେଳେ ଭୁଲିଗଲ ତେବେ ଉପାୟ କରିବ । ଦୁଇଥର ନମସ୍କାର କରିବ ଏବଂ କହିବ ଯେ 'ଦାଦା ଭଗବାନ, ମୋ ଇଚ୍ଛା ନଥିଲା, ତଥାପି ଭୁଲିଗଲି, ସେଥିପାଇଁ ତାହାର କ୍ଷମା ମାଗୁଛି । ଏବେ ଆଉ ଏପରି କରିବି ନାହିଁ ।'

ସମୟ ଅନୁସାରେ ବିଧି କରିବା ଭୁଲିଯାଅ ଏବଂ ପରେ ମନେ ପଡ଼େ ତେବେ ପ୍ରତିକ୍ରମଣ କରି ପରେ ବିଧି କରିବ ।

'ଡିସ୍ଚାର୍ଜ'ରେ ଯେଉଁ ଅତିକ୍ରମଣ ହୋଇଥାଏ, ତାହାର ମୁଁ ପ୍ରତିକ୍ରମଣ କରେ । ସାମ୍ନାବାଲାକୁ ଦୁଃଖ ପହଞ୍ଚାଏ ଏପରି ଡିସ୍ଚାର୍ଜର ପ୍ରତିକ୍ରମଣ କରିବାର ଅଛି । ଏଠି ମହାତ୍ମାଙ୍କର ଅବା ଦାଦାଜୀଙ୍କର କିଛି ଭଲ କରିଥିବ ତେବେ ତାହାର ପ୍ରତିକ୍ରମଣ ଦରକାର ନାହିଁ । କିନ୍ତୁ ବାହାରେ କାହାର ଭଲ କଲ ତେବେ ତାହାର ପ୍ରତିକ୍ରମଣ କରିବାକୁ ପଡ଼ିବ କାରଣ ଉପଯୋଗ ଭୁଲିଗଲେ, ତାହାର ପ୍ରତିକ୍ରମଣ କରିବାକୁ ପଡ଼ିବ ।

**ପ୍ରଶ୍ନକର୍ତ୍ତା :** ପ୍ରତିକ୍ରମଣ କରୁ ତେବେ ତାହା ସାମ୍ନାବାଲାକୁ ପହଞ୍ଚେ ?

**ଦାଦାଶ୍ରୀ :** ସାମ୍ନାବ୍ୟକ୍ତିକୁ ପହଞ୍ଚେ । ଧୀରେ ଧୀରେ ସେ ନରମ ହେବାକୁ ଲାଗିବ । ତା'କୁ ଜଣା ପଡୁ ବା ନପଡୁ । ଆମ ପ୍ରତି ତା' ଭାବ ନରମ ହେବାକୁ ଲାଗେ । ଆମ ପ୍ରତିକ୍ରମଣରେ ତ ବହୁତ ଶକ୍ତି ଅଛି । ଯଦି ଗୋଟିଏ ଘଣ୍ଟା ଉଚିତ ଢଙ୍ଗରେ ହୁଏ, ତେବେ ସାମ୍ନାବାଲା ଭିତରେ ପରିବର୍ତ୍ତନ ଆସିଯାଏ । ଯାହାର ଆମେ

ପ୍ରତିକ୍ରମଣ କରନ୍ତି, ସେ ଆମର ଦୋଷ ତ ଦେଖିବ ନାହିଁ ବରଂ ତା'କୁ ଆମପ୍ରତି ସମ୍ମାନ ଉତ୍ପନ ହେବ ।

**ପ୍ରଶ୍ନକର୍ତ୍ତା :** ପ୍ରତିକ୍ରମଣ କରୁ ତେବେ ନୂଆ 'ଚାର୍ଜ' କରୁନାହୁଁ ?

**ଦାଦାଶ୍ରୀ :** ଆତ୍ମା କର୍ତ୍ତା ହେବ ତେବେ କର୍ମବନ୍ଧନ ହେବ । ଆତ୍ମା ପ୍ରତିକ୍ରମଣ କରେ ନାହିଁ । ଚନ୍ଦୁଭାଇ କରେ ଏବଂ ତୁମେ ତା'ର ଜ୍ଞାତାଦ୍ରଷ୍ଟା ରୁହ ।

ନିଜ ସ୍ୱରୂପର ପ୍ରାପ୍ତି ପରେ ଉଚିତ ପ୍ରତିକ୍ରମଣ ହେବ । ପ୍ରତିକ୍ରମଣ କରିବାବାଲା ଦରକାର, ପ୍ରତିକ୍ରମଣ କରାଇବାବାଲା ଦରକାର ।

ଆମ ପ୍ରତିକ୍ରମଣ ଅର୍ଥାତ କ'ଣ ? ପୁଲୀ ଖୋଲିବା ସମୟରେ ଯେତେ ଖଣ୍ଡ ହେଲା ସେସବୁକୁ ଯୋଡ଼ି ଠିକ କରିଦେବା, ତାହା ହେଉଛି ଆମ ପ୍ରତିକ୍ରମଣ ।

**ପ୍ରଶ୍ନକର୍ତ୍ତା :** ନିଦରୁ ଉଠିବା ମାତ୍ରେ ପ୍ରତିକ୍ରମଣ ଆରମ୍ଭ ହୋଇଯାଉଛି ।

**ଦାଦାଶ୍ରୀ :** ଏହା ପ୍ରତିକ୍ରମଣ ଆତ୍ମା ହେଲା । ଶୁଦ୍ଧାତ୍ମା ତ ଅଛି କିନ୍ତୁ ଏ ପ୍ରତିଷ୍ଠିତ ଆତ୍ମା 'ପ୍ରତିକ୍ରମଣ ଆତ୍ମା' ହୋଇଗଲା । ଲୋକଙ୍କର କଷାୟୀ ଆତ୍ମା ଅଟେ । ଏହି ୱାର୍ଲ୍ଡରେ କେହି ଜଣେ ବି ଏପରି ନାହିଁ ଯିଏ ପ୍ରତିକ୍ରମଣ କରିପାରିବ ।

ଯେମିତି-ଯେମିତି ନଗଦ ପ୍ରତିକ୍ରମଣ ହୋଇଚାଲିବ, ସେମିତି-ସେମିତି ଶୁଦ୍ଧ ହୋଇଚାଲିବ । ଅତିକ୍ରମଣ ସାମ୍ନାରେ ଯଦି ଆମେ ନଗଦ ପ୍ରତିକ୍ରମଣ କରିବା ତେବେ ମନ ଏବଂ ବାଣୀ ଶୁଦ୍ଧ ହେବାକୁ ଲାଗିବ ।

ପ୍ରତିକ୍ରମଣ ଅର୍ଥାତ ବୀଜକୁ ଭାଜି ବୁଣିବା ।

ଆଲୋଚନା-ପ୍ରତିକ୍ରମଣ ଏବଂ ପ୍ରତ୍ୟାଖ୍ୟାନ ମାନେ ପ୍ରତିଦିନର ଲେଖା-ଜୋଖା (balance sheet) ବାହାର କରିବା ।

ଯେତିକି ଦୋଷ ଦେଖାଗଲା ସେତିକି କମାଇଲେ । ସେତିକି ପ୍ରତିକ୍ରମଣ କରିବାର ଅଛି ।

**ପ୍ରଶ୍ନକର୍ତ୍ତା :** ପ୍ରତିକ୍ରମଣ ନ ହୁଏ, ତାହା ପ୍ରକୃତି ଦୋଷ ଅଟେ ନା ଅନ୍ତରାୟ କର୍ମ ?

**ଦାଦାଶ୍ରୀ :** ତାହା ପ୍ରକୃତି ଦୋଷ ଅଟେ ଏବଂ ସେ ପ୍ରକୃତି ଦୋଷ ସବୁ ଜାଗାରେ ନଥାଏ । କିଛି ଜାଗାରେ ଦୋଷ ହୁଏ ଏବଂ କିଛି ଜାଗାରେ ହୁଏ ନାହିଁ । ପ୍ରକୃତି ଦୋଷରେ ପ୍ରତିକ୍ରମଣ ନ ହୁଏ, ତେବେ ସେଥିରେ ଅସୁବିଧା ନାହିଁ । ଆମକୁ ତ

କେବଳ ଏତିକି ଦେଖିବାର ଅଛି ଯେ ଆମର ଭାବ କ'ଣ ଅଛି ? ଆମକୁ ଅନ୍ୟ କିଛି ଦେଖିବାର ନାହିଁ । ତୁମର ଇଚ୍ଛା ପ୍ରତିକ୍ରମଣ କରିବାର ଅଟେ ନା ?

**ପ୍ରଶ୍ନକର୍ତ୍ତା :** ହଁ, ପୁରାପୁରି ।

**ଦାଦାଶ୍ରୀ :** ଏହା ସତ୍ତ୍ୱେ ବି ଯଦି ପ୍ରତିକ୍ରମଣ ହୋଇ ନ ପାରୁଛି, ତେବେ ତାହା ପ୍ରକୃତି ଦୋଷ ଅଟେ । ପ୍ରକୃତି ଦୋଷରେ ତୁମେ ଦାୟୀ ନୁହଁ । କେବେ-କେବେ ପ୍ରକୃତି କୁହେ ବି ସତରେ ଏବଂ କେବେ ନ କହି ବି ପାରେ, ଏହା ତ ଢୋଲ ପରି ଅଟେ । ବାଜେ ତ ବାଜେ ନହେଲେ ନ ବାଜି ବି ପାରେ । ଏହାକୁ ଅନ୍ତରାୟ କୁହାଯାଏ ନାହିଁ ।

**ପ୍ରଶ୍ନକର୍ତ୍ତା :** 'ସମଭାବ ରେ *ନିକାଲ*' କରିବାର ଦୃଢ *ନିଶ୍ଚୟ* ହେବା ସତ୍ତ୍ୱେ ଝଗଡ଼ା ହୋଇଯାଏ, ଏପରି କାହିଁକି ?

**ଦାଦାଶ୍ରୀ :** କେତେ ଜାଗାରେ ଏପରି ହେଉଛି ? ଶହେ ଜାଗାରେ ?

**ପ୍ରଶ୍ନକର୍ତ୍ତା :** ଗୋଟିଏ ଜାଗାରେ ହିଁ ହେଉଛି ।

**ଦାଦାଶ୍ରୀ :** ତେବେ ତାହା ନିକାଚିତ୍ କର୍ମ ଅଟେ । ସେ ନିକାଚିତ୍ କର୍ମ ଧୋଇହେବ କିପରି ? ଆଲୋଚନା, ପ୍ରତିକ୍ରମଣ ଏବଂ ପ୍ରତ୍ୟାଖ୍ୟାନ ଦ୍ୱାରା । ଏହା ଦ୍ୱାରା କର୍ମ ହାଲୁକା ହୋଇଯିବ । ତାହା ପରେ ଜ୍ଞାତା-ଦ୍ରଷ୍ଟା ରହିହେବ । ତାହା ପାଇଁ ତ ପ୍ରତିକ୍ରମଣ ନିରନ୍ତର କରିବାକୁ ପଡିବ । ଯେତିକି 'ଫୋର୍ସ'ରେ ନିକାଚିତ୍ ହୋଇଥିବ, ସେତିକି ହିଁ 'ଫୋର୍ସ' ବାଲା ପ୍ରତିକ୍ରମଣ ଦ୍ୱାରା ତାହା ଧୋଇ ହୋଇପାରିବ ।

**ପ୍ରଶ୍ନକର୍ତ୍ତା :** ଯଦି ଆମେ ସ୍ଥିର କରିବୁ ଯେ ଭବିଷ୍ୟତରେ ଏପରି କରିବାର ହିଁ ନାହିଁ । ଏପରି ଭୁଲ ପୁଣି ଆଉ କରିବାର ହିଁ ନାହିଁ, ଏପରି ହଣ୍ଡ୍ରେଡ୍ ପରସେଣ୍ଟ୍ ଭାବ ସହିତ ସ୍ଥିର କରିବୁ, ଏହା ସତ୍ତ୍ୱେ ମଧ୍ୟ ପୁଣି ସେହିପରି ଭୁଲ ହେବା ବା ନହେବା, ତାହା କ'ଣ ନିଜ ହାତରେ ଅଛି ?

**ଦାଦାଶ୍ରୀ :** ତାହା ତ ହୋଇପାରେ ପୁଣି । ଏପରି ଅଟେ, ତୁମେ ଏକ ବଲ୍ ଏଠାକୁ ଆଣିଲ ଏବଂ ମୋତେ ଦେଲ । ମୁଁ ଏଇଠୁ ଫୋପାଡ଼ିଲି । ମୁଁ ତ ଗୋଟିଏ ହିଁ କାର୍ଯ୍ୟ କଲି । ମୁଁ ତ ଥରେ ବଲ୍ ଫୋପାଡ଼ିଲି । ଏବେ ମୁଁ କହିବି ଯେ ମୋର ଇଚ୍ଛା ନାହିଁ, ତୁ ବନ୍ଦ ହୋଇ ଯା, ତେବେ ତାହା ବନ୍ଦ ହୋଇଯିବ ?

**ପ୍ରଶ୍ନକର୍ତ୍ତା :** ହେବ ନାହିଁ ।

**ଦାଦାଶ୍ରୀ :** ତେବେ କ'ଣ ହେବ ?

**ପ୍ରଶ୍ନକର୍ତ୍ତା :** ତାହା ତ ତିନି-ଚାରି-ପାଞ୍ଚ ଥର ଡେଇଁବ ।

**ଦାଦାଶ୍ରୀ :** ଅର୍ଥାତ ଆମ ହାତରୁ ପୁଣି ନେଚର୍ ହାତକୁ ଗଲା । ଏବେ ନେଚର୍ ଯେତେବେଳେ ବନ୍ଦ କରିବ ସେତେବେଳେ । ତେବେ ଏପରି ଅଟେ ଏ ସବୁ । ଆମର ଯେଉଁ ଭୁଲ ଅଛି, ତାହା ନେଚର ହାତକୁ ଚାଲିଯାଏ ! !

**ପ୍ରଶ୍ନକର୍ତ୍ତା :** ନେଚର ହାତକୁ ଗଲା, ତେବେ ପୁଣି ପ୍ରତିକ୍ରମଣ କରିବା ଦ୍ୱାରା କ'ଣ ଫାଇଦା ହୁଏ ?

**ଦାଦାଶ୍ରୀ :** ବହୁତ ପ୍ରଭାବ ପଡ଼େ । ପ୍ରତିକ୍ରମଣ ଦ୍ୱାରା ତ ସାମ୍ନାବାଲା ଉପରେ ଏତେ ଅଧିକ ପ୍ରଭାବ ପଡ଼େ ଯେ ଯଦି ଗୋଟିଏ ଘଣ୍ଟା ଜଣେ ବ୍ୟକ୍ତିର ପ୍ରତିକ୍ରମଣ କରିବ ତେବେ ସେ ବ୍ୟକ୍ତି ଭିତରେ କିଛି ନୂଆ ପ୍ରକାରର, ବହୁତ ଜବରଦସ୍ତ (ଅସାଧାରଣ) ପରିବର୍ତ୍ତନ ହେବ । ପ୍ରତିକ୍ରମଣ କରିବାବାଲା ଏହି ଜ୍ଞାନ ପ୍ରାପ୍ତ କରିଥିବା ଦରକାର । ଶୁଦ୍ଧ ହୋଇଥିବା ଦରକାର, 'ମୁଁ ଶୁଦ୍ଧାତ୍ମା ଅଟେ' ଏପରି ଦୃଷ୍ଟିବାଲା । ତେବେ ତା' ପ୍ରତିକ୍ରମଣର ବହୁତ ପ୍ରଭାବ ପଡ଼ିବ । ପ୍ରତିକ୍ରମଣ ତ ଆମର ସବୁଠୁ ବଡ଼ ହତିୟାର ଅଟେ ।

ଯଦି 'ଜ୍ଞାନ' ନ ନେଇଥିବ ତେବେ ପ୍ରକୃତି ପୁରାଦିନ ଓଲଟା ହିଁ ଚାଲୁଥାଏ ଯେବେକି ଏବେ ତ ସିଧା ହିଁ ଚାଲେ । ତୁ ସାମ୍ନାବାଲାକୁ ଶୁଣେଇ ଦେବୁ କିନ୍ତୁ ଭିତରେ କହିବୁ ଯେ, 'ନା, ନା, ଏପରି କରିବା ଉଚିତ ନୁହେଁ । ଶୁଣେଇ ଦେବାର ବିଚାର ଆସିଲା ତାହାର ପ୍ରତିକ୍ରମଣ କର ।' ଆଉ ଜ୍ଞାନ ନେବା ପୂର୍ବରୁ ତ ଶୁଣେଇ ଦେଉଥିଲା ଏବଂ ଉପରୁ କହୁଥିଲା ଯେ 'ଆହୁରି ଶୁଣେଇବାର ଥିଲା ।'

ମନୁଷ୍ୟର ସ୍ୱଭାବ କିପରି ଯେ ଯେପରି ପ୍ରକୃତି, ନିଜେ ସେହିପରି ହିଁ ହୋଇଯାଏ । ଯେବେ ପ୍ରକୃତିରେ ସୁଧାର ହୁଏ ନାହିଁ ସେତେବେଳେ କହିବ, 'ଛାଡ଼ ନା' ! ଆରେ, ବାହାରେ ସୁଧାର ହେଉନାହିଁ ତେବେ କିଛି ଅସୁବିଧା ନାହିଁ, ତୁ ଆମର ଭିତରେ ସୁଧାର ! ପରେ ଆମର ରେସ୍ପନ୍ସିବିଲିଟୀ ନାହିଁ ! ଏତିକି ହେଉଛି ଏହି 'ସାଇନ୍ସ' ! ! ! ବାହାରେ ଯାହାବି ହେଉ ତାହାର ରେସ୍ପନ୍ସିବିଲିଟୀ ହିଁ ନାହିଁ । ଏତିକି ଯଦି ବୁଝିନିଏ ତେବେ ରାସ୍ତା ବାହାରିଯିବ ।

## ୨୨. *ନିକାଲ, ଚିକଣି ଫାଇଲ୍‌ଙ୍କର*

ଅନେକ ଲୋକ ମୋତେ କୁହନ୍ତି ଯେ, 'ଦାଦାଜୀ, ସମଭାବରେ *ନିକାଲ* କରିବାକୁ ଯାଉଛି କିନ୍ତୁ ହେଉନାହିଁ !' ସେତେବେଳେ ମୁଁ କହେ, ଆରେ ଭାଇ, *ନିକାଲ*

କରିବାର ନାହିଁ ! ତୋତେ କେବଳ ସମଭାବରେ *ନିକାଲ* କରିବାର ଭାବ ରଖିବାର ଅଛି । ସମଭାବରେ *ନିକାଲ* ହେଉ ଅବା ନହେଉ ତାହା ତୋ ଅଧୀନରେ ନାହିଁ । ତୁ ମୋ ଆଜ୍ଞାରେ ରହ ନା ! ତାହାଦ୍ୱାରା ତୋର ବହୁତ କିଛି କାମ ହୋଇଯିବ ଆଉ ଯଦି ନ ହୁଏ ତେବେ ତାହା 'ନେଚର୍'ର ଅଧୀନ ଅଟେ ।

ସାମ୍ନାବାଲାର ଦୋଷ ଦେଖାଯିବା ବନ୍ଦ ହୋଇଯିବ, ତେବେ ସଂସାର ଛୁଟିଯିବ । ଆମକୁ ଗାଳିକରୁ, କ୍ଷତିକରୁ, ପିଟୁ ତଥାପି ଯଦି ଦୋଷ ନ ଦେଖାଯାଏ, ସେତେବେଳେ ସଂସାର ଛୁଟିବ । ନହେଲେ ସଂସାର ଛୁଟିବ ନାହିଁ ।

ଏବେ ସବୁ ଲୋକଙ୍କର ଦୋଷ ଦେଖାଯିବା ବନ୍ଦ ହୋଇଯାଇଛି ?

**ପ୍ରଶ୍ନକର୍ତ୍ତା :** ହଁ ଦାଦା । କେବେ ଯଦି ଦେଖାଯାଏ ତେବେ ପ୍ରତିକ୍ରମଣ କରିନେଉଛି ।

**ଦାଦାଶ୍ରୀ :** ରାସ୍ତା ଏତିକି ଯେ ଦାଦାଙ୍କ ଆଜ୍ଞାରେ ରହିବାର ଅଛି । ଏପରି *ନିଶ୍ଚୟ* କରି ପରଦିନରୁ ଆରମ୍ଭ କରିଦେବା । ଏବଂ ଯେତିକି ଆଜ୍ଞାରେ ନ ରହିପାରିଲେ, ତାହାର ପ୍ରତିକ୍ରମଣ କରିବାର ଅଛି । ଏବଂ ଘରର ପ୍ରତ୍ୟେକ ସଦସ୍ୟଙ୍କୁ ସନ୍ତୁଷ୍ଟ କରିବ, ସମଭାବରେ *ନିକାଲ* କରି । ତଥାପି ଘରର ସବୁ ଲୋକ ଯଦି ଡିଆଁକୁଦା କରନ୍ତି ତେବେ ଆମକୁ କେବଳ ଦେଖିବାର ଅଛି । ଆମର ପୂର୍ବ ହିସାବ ଅଛି ସେଥିପାଇଁ ଡିଆଁକୁଦା କରିବେ । ଏହା ତ ଆଜି ସ୍ଥିର କଲେ । ଏଣୁ ଘରର ସମସ୍ତଙ୍କୁ ପ୍ରେମରେ ଜିତ । ତାହା ତ ପରେ ନିଜକୁ ମଧ୍ୟ ଖବର ପଡ଼ିବ ଯେ ଏବେ ସବୁ ଠିକଣାକୁ ଆସୁଛି । ତଥାପି, ଘର ଲୋକେ ଯେବେ ଅଭିପ୍ରାୟ ଦିଅନ୍ତି, ସେତେବେଳେ ମାନିବା ଯୋଗ୍ୟ ଅଟେ । ଶେଷରେ ତ ଘର ଲୋକେ ତା'ପକ୍ଷରେ ହିଁ ଅଟନ୍ତି ।

**ପ୍ରଶ୍ନକର୍ତ୍ତା :** ଆମେ ଯେଉଁ ପ୍ରତିକ୍ରମଣ କରୁଛୁ ସେହି ପ୍ରତିକ୍ରମଣର ପରିଣାମ, ଏହି ମୂଳ ସିଦ୍ଧାନ୍ତ ଉପରେ ଆଧାରିତ ଯେ, ଆମେ ସାମ୍ନାବାଲାର ଶୁଦ୍ଧାତ୍ମାକୁ ଦେଖୁଛୁ, ତେବେ ତା'ପ୍ରତି ଯେଉଁ ଭାବ ଅଛି, ଖରାପ ଭାବ ଅଛି, ତାହା କମିଯିବ ନା ?

**ଦାଦାଶ୍ରୀ :** ଆମ ଖରାପ ଭାବ ନଷ୍ଟ ହେଇଯିବ । ଆମ ନିଜ ପାଇଁ ହିଁ ଅଟେ ଏ ସବୁ । ସାମ୍ନାବାଲା ସହ ନେବା-ଦେବା ନାହିଁ । ସାମ୍ନାବାଲାର ଶୁଦ୍ଧାତ୍ମା ଦେଖିବାର ହେତୁ କେବଳ ଏତିକି ଯେ ଆମେ ଶୁଦ୍ଧ ଦଶାରେ, ଜାଗୃତ ଦଶାରେ ଅଛେ ।

**ପ୍ରଶ୍ନକର୍ତ୍ତା :** ତେବେ ତା'କୁ ଆମ ପ୍ରତି ଯେଉଁ ଖରାପ ଭାବ ଥିବ, ତାହା କମ ହୋଇଯିବ ନା ?

**ଦାଦାଶ୍ରୀ :** ନା, କମ ହେବ ନାହିଁ । ତୁମେ ପ୍ରତିକ୍ରମଣ କରିବ ତେବେ ହେବ । ଶୁଦ୍ଧାତ୍ମା ଦେଖିଲେ ହେବନାହିଁ, କିନ୍ତୁ ପ୍ରତିକ୍ରମଣ କରିବ ତେବେ ହେବ ।

**ପ୍ରଶ୍ନକର୍ତ୍ତା :** ଆମେ ପ୍ରତିକ୍ରମଣ କରୁ ତେବେ ସେ ଆତ୍ମା ଉପରେ ପ୍ରଭାବ ହୁଏ ନା ନାହିଁ ?

**ଦାଦାଶ୍ରୀ :** ହୁଏ, ପ୍ରଭାବ ହୁଏ । ଶୁଦ୍ଧାତ୍ମା ଦେଖିବା ଦ୍ୱାରା ବି ଫାଇଦା ହୁଏ କିନ୍ତୁ ତୁରନ୍ତ ଫାଇଦା ହୁଏ ନାହିଁ । ପରେ ଧୀରେ, ଧୀରେ, ଧୀରେ ! କାହିଁକିନା ଶୁଦ୍ଧାତ୍ମା ରୂପରେ କେହି ଦେଖି ହିଁ ନାହିଁ । ଭଲ ମଣିଷ ଏବଂ ଖରାପ ମଣିଷ ଏହି ରୂପରେ ହିଁ ଦେଖିଛନ୍ତି । ଶୁଦ୍ଧାତ୍ମା ରୂପରେ କେହି ଦେଖିନାହାନ୍ତି ।

ଯଦି ବାଘର ପ୍ରତିକ୍ରମଣ କରିବା ତେବେ ବାଘ ବି ଆମ କହିବା ଅନୁସାରେ କାମ କରିବ । ବାଘ ଏବଂ ମନୁଷ୍ୟ ଭିତରେ କୌଣସି ଫରକ ନାହିଁ । ଫରକ ତୁମ ସ୍ପନ୍ଦନର ଅଟେ, ଯାହାର ପ୍ରଭାବ ତା'ଉପରେ ପଡ଼େ । ଯେପର୍ଯ୍ୟନ୍ତ ବାଘ ହିଂସକ ଅଟେ, ତୁମ ମନରେ ଏପରି ଧ୍ୟାନ ରୁହେ, ସେପର୍ଯ୍ୟନ୍ତ ସେ ନିଜେ ହିଂସକ ହିଁ ରହିବ । ଏବଂ ବାଘ ଶୁଦ୍ଧାତ୍ମା ଅଟେ ଏପରି ଧ୍ୟାନ ରୁହେ ତେବେ ସେ ଶୁଦ୍ଧାତ୍ମା ହିଁ ଅଟେ ଏବଂ ଅହିଂସକ ରହିବ । ସବୁକିଛି ହୋଇପାରିବ, ଏପରି ଅଟେ ।

ଥରେ ଆମ୍ବଗଛରେ ମାଙ୍କଡ଼ ଆସି ଆମ୍ବ ଛିଡ଼େଇ ନେଇଯାନ୍ତି ତେବେ ପରିଣାମ କେଉଁ ପର୍ଯ୍ୟନ୍ତ ବିଗିଡ଼ି ଯାଏ? ଯେ ଏ ଆମ୍ବଗଛ ଯଦି କାଟି ଦେଇଥାନ୍ତି ତେବେ ଭଲ ହୋଇଥାନ୍ତା, ଏପରି ଭାବି ନିଏ । ଏବେ ଭଗବାନଙ୍କ ସାକ୍ଷୀରେ ବାହାରିଥିବା ବାଣୀ କ'ଣ ବ୍ୟର୍ଥ ଯିବ ? ପରିଣାମ ନ ବିଗିଡ଼ିବ ତେବେ କିଛି ବି ହେବ ନାହିଁ । ସବୁକିଛି ଶାନ୍ତ ହୋଇଯିବ, ବନ୍ଦ ହୋଇଯିବ । ଏ ସବୁ ଆମର ହିଁ ପରିଣାମ ଅଟେ । ଆଜିଠାରୁ କାହାପାଇଁ ସ୍ପନ୍ଦନ ଦେବା, କିଞ୍ଚିତ ମାତ୍ର ବି କାହା ପାଇଁ ବିଚାର କରିବା ବନ୍ଦ କରିଦିଅ, ବିଚାର ଆସେ ତେବେ ପ୍ରତିକ୍ରମଣ କରି ଧୋଇଦେବ ତେବେ ପୁରା ଦିନ ବିନା କିଛି ସ୍ପନ୍ଦନରେ ବିତିବ ! ଏହିପରି ଦିନ ବିତିଲା ତେବେ ବହୁତ ହୋଇଗଲା, ଏହା ହିଁ ପୁରୁଷାର୍ଥ ।

ଏହି ଜ୍ଞାନ ପ୍ରାପ୍ତି ପରେ ନୂଆ ପର୍ଯ୍ୟାୟ ଅଶୁଦ୍ଧ ହୁଏ ନାହିଁ, ପୁରୁଣା ପର୍ଯ୍ୟାୟ ସବୁକୁ ଶୁଦ୍ଧ କରିବାର ଅଛି ଏବଂ ସମତା ରଖିବାର ଅଛି । ସମତା ଅର୍ଥାତ ବୀତରାଗତା । ନୂଆ ପର୍ଯ୍ୟାୟ ବିଗିଡିବ ନାହିଁ, ନୂଆ ପର୍ଯ୍ୟାୟ ଶୁଦ୍ଧ ହିଁ ରହିବ । ପୁରୁଣା ପର୍ଯ୍ୟାୟ ଅଶୁଦ୍ଧ ହୋଇଛି । ସେ ସବୁର ଶୁଦ୍ଧିକରଣ କରିବାର ଅଛି । ମୋ ଆଜ୍ଞାରେ ରହିବା ଦ୍ୱାରା ତାହାର ଶୁଦ୍ଧିକରଣ ହେବ ଏବଂ ସମତାରେ ରହିବାର ଅଛି ।

**ପ୍ରଶ୍ନକର୍ତ୍ତା :** ଦାଦା, ଜ୍ଞାନ ପ୍ରାପ୍ତିର ପୂର୍ବରୁ ଏହି ଜନ୍ମର ଯେଉଁ ପର୍ଯ୍ୟାୟ ବାନ୍ଧିହୋଇ ସାରିଛି, ତାହାର ନିରାକରଣ କିପରି ହେବ ?

**ଦାଦାଶ୍ରୀ :** ଯେପର୍ଯ୍ୟନ୍ତ ବଞ୍ଚିଛେ, ସେପର୍ଯ୍ୟନ୍ତ ପଶ୍ଚାତାପ କରି ତାହାକୁ ଧୋଇଦେବା । କିନ୍ତୁ ସେ କିଛି ଥାଏ, ତାହା ପୁରା ନିରାକରଣ ହେବ ନାହିଁ, ମାତ୍ର ଢିଲା ତ ହୋଇଯିବ ନିଶ୍ଚିତ । ଢିଲା ହେବା ଦ୍ୱାରା ଆସନ୍ତା ଜନ୍ମରେ ହାତ ଲଗାଇବା ମାତ୍ରେ ତୁରନ୍ତ ଗଣ୍ଠି ଫିଟିଯିବ ।

**ପ୍ରଶ୍ନକର୍ତ୍ତା :** ଆପଣଙ୍କ ଜ୍ଞାନ ପ୍ରାପ୍ତ ହେବା ପୂର୍ବରୁ ନର୍କର ବନ୍ଧ୍ ପଡ଼ି ଯାଇଥିବ ତେବେ ନର୍କରେ ଯିବାକୁ ପଡ଼ିବ ?

**ଦାଦାଶ୍ରୀ :** ଏପରି ଅଟେ, ଏହି ଜ୍ଞାନ ହିଁ ଏପରି ଯେ ସବୁ ପାପ ଭସ୍ମୀଭୂତ ହୋଇଯାଏ, ବନ୍ଧ୍ ଛୁଟିଯାଏ । କେହି ଯଦି ନର୍କରେ ଯିବାକୁ ଥିବ, କିନ୍ତୁ ଯେପର୍ଯ୍ୟନ୍ତ ଜୀବିତ ଅଛି ସେତିକି ସମୟ ଭିତରେ ଯଦି ସେ ପ୍ରତିକ୍ରମଣ କରେ, ତେବେ ତା'ର ଧୋଇଯିବ । ଚିଠି ପୋଷ୍ଟରେ ପକାଇବା ପୂର୍ବରୁ ଯଦି ତୁମେ ଲେଖିଦେବ ଯେ ଉପରୋକ୍ତ ବାକ୍ୟ ଲେଖିବା ସମୟରେ ମନର ଠିକଣା ନଥିଲା ତେବେ ତାହା ଉଡ଼ିଯିବ ।

**ପ୍ରଶ୍ନକର୍ତ୍ତା :** ପ୍ରାୟଶ୍ଚିତ ଦ୍ୱାରା ବନ୍ଧ୍ ଛୁଟିଯିବ ?

**ଦାଦାଶ୍ରୀ :** ହଁ, ଛୁଟିଯାଏ । କିଛି ପ୍ରକାରର ହିଁ ବନ୍ଧ୍ ଥାଏ, ସେ କର୍ମ ପ୍ରାୟଶ୍ଚିତ କରିବା ଦ୍ୱାରା ମଜଭୁତ୍ ଗଣ୍ଠିରୁ ଢିଲା ହୋଇଯିବ । ଆମ ପ୍ରତିକ୍ରମଣରେ ବହୁତ ଶକ୍ତି ଅଛି । ଦାଦାଙ୍କୁ ହାଜର ରଖି କରିବ ତେବେ କାମ ହୋଇଯିବ ।

କର୍ମର ଧକ୍କାରୁ ଯେତେ ଜନ୍ମ ହେବାକୁ ଥିବ ତାହା ହେବ, କଦାଚିତ ଏକ-ଦୁଇ ଜନ୍ମ, ମାତ୍ର ତାହା ପରେ ସୀମନ୍ଧର ସ୍ୱାମୀଙ୍କ ପାଖକୁ ହିଁ ଯିବାକୁ ପଡ଼ିବ । ଏଠାକାର ଧକ୍କା, ପୂର୍ବର ବନ୍ଧା ହୋଇସାରିଥିବା ହିସାବ ଅନୁସାରେ, କିଛି ଚିକିଣା ହୋଇ ଯାଇଥିବ, ତାହା ପୁରା ହୋଇଯିବ । ସେଥିରେ କୌଣସି ଚାରା ହିଁ ନାହିଁ ! ଏହା ତ ରଘା ସୁନାରିର ତରାଜୁ ଅଟେ । ନ୍ୟାୟ, ଜବରଦସ୍ତ ନ୍ୟାୟ ! ଶୁଦ୍ଧ ନ୍ୟାୟ ! ପ୍ୟୋର୍ ନ୍ୟାୟ ! ସେଥିରେ ଚଳେ ନାହିଁ *ପୋଲମପୋଲ୍* ।

**ପ୍ରଶ୍ନକର୍ତ୍ତା :** ପ୍ରତିକ୍ରମଣ କରିବା ଦ୍ୱାରା କର୍ମର ଧକ୍କା କମ୍ ହୋଇଯାଏ ?

**ଦାଦାଶ୍ରୀ :** କମ୍ ହୁଏ ନା ! ଏବଂ ଜଲଦୀ ନିବେଡ଼ା(ସମାଧାନ ପୂର୍ବକ ଅନ୍ତ) ଆସିଯାଏ ।

**ପ୍ରଶ୍ନକର୍ତ୍ତା :** ଯାହାକୁ କ୍ଷମା ମାଗିବାର ଅଛି, ସେହି ବ୍ୟକ୍ତିର ଯଦି ଦେହବିଲୟ ହୋଇ ଯାଇଥିବ, ତେବେ ପ୍ରତିକ୍ରମଣ କିପରି କରିବୁ ?

**ଦାଦାଶ୍ରୀ :** ଦେହବିଲୟ ହୋଇ ଯାଇଥିବ, ତଥାପି ଯଦି ତା'ର ଫଟୋ ଥିବ, ତା'ର ଚେହେରା ମନେ ଥିବ, ତେବେ କରିପାରିବା । ଚେହେରା ଟିକିଏ-ବି ମନେ ନଥିବ ଆଉ ନାଁ ଜଣା ଥିବ, ତେବେ ନାଁ ନେଇ ମଧ୍ୟ କରିପାରିବା, ତେବେ ସବୁ ତା'କୁ ପହଞ୍ଚି ଯିବ ।

## ୨୩. ମନ ଯେତେବେଳେ ଉଦଣ୍ଡ ମଚାଏ...

ମହାତ୍ମାମାନଙ୍କୁ ଭାବ-ଅଭାବ ହୁଏ କିନ୍ତୁ ତାହା ନିକାଲୀ କର୍ମ ଅଟେ, ଭାବକର୍ମ ନୁହେଁ । କ୍ରୋଧ-ମାନ-ମାୟା-ଲୋଭ-ରାଗ୍-ଦ୍ୱେଷ ଏବଂ ଭାବାଭାବ, ଏ ସବୁ ନିକାଲୀ କର୍ମ ଅଟେ । ସେ ସବୁର ସମଭାବରେ *ନିକାଲ* କରିବାର ଅଛି । ଏହି ସବୁ କର୍ମ ପ୍ରତିକ୍ରମଣ ସହିତ *ନିକାଲ* ହେବ, ଏମିତି ଖାଲିରେ *ନିକାଲ* ହେବ ନାହିଁ ।

**ପ୍ରଶ୍ନକର୍ତ୍ତା :** ଯଦି କେହି ଆମର ଅପମାନ କରିଦିଏ ତେବେ ସେତେବେଳେ ମନର ପ୍ରତିକାର ଚାଲୁ ରହେ, ବାଣୀର ପ୍ରତିକାର କଦାଚିତ ନ ବି ହୁଏ ।

**ଦାଦାଶ୍ରୀ :** ଆମକୁ ତ ସେଥିରେ ଅସୁବିଧା ନାହିଁ ଯେ ସେହି ସମୟରେ କ'ଣ ହେଲା । ଆରେ, ଦେହ ଦ୍ୱାରା ବି ପ୍ରତିକାର ହୋଇଯାଏ, ତଥାପି ଯେତିକି-ଯେତିକି ଶକ୍ତି ଥାଏ, ସେହି ଅନୁସାରେ ବ୍ୟବହାର ହୁଏ । ଯାହାର ସମ୍ପୂର୍ଣ୍ଣ ଶକ୍ତି ଉତ୍ପନ୍ନ ହୋଇସାରିଥିବ, ତା'ର ମନର ପ୍ରତିକାର ବି ବନ୍ଦ ହୋଇଯାଏ । ତଥାପି ମୁଁ କ'ଣ କହେ? ମନର ପ୍ରତିକାର ଚାଲୁ ରହେ, ବାଣୀ ଦ୍ୱାରା ପ୍ରତିକାର ହୋଇଯାଏ, ଆରେ ! ଦେହ ଦ୍ୱାରା ବି ପ୍ରତିକାର ହୋଇଯାଏ, ତେବେ ତିନି ପ୍ରକାରର ନିର୍ବଳତା ଉତ୍ପନ୍ନ ହେଲା, ତେବେ ସେଠି ତିନି ପ୍ରକାରର ପ୍ରତିକ୍ରମଣ କରିବାକୁ ପଡ଼ିବ ।

**ପ୍ରଶ୍ନକର୍ତ୍ତା :** ବିଚାରର ପ୍ରତିକ୍ରମଣ କରିବାକୁ ପଡ଼େ ?

**ଦାଦାଶ୍ରୀ :** ବିଚାରକୁ ଦେଖିବାର ଅଛି । ତାହାର ପ୍ରତିକ୍ରମଣ ଦରକାର ନାହିଁ । ଯଦି କାହାପ୍ରତି ବହୁତ ଖରାପ ବିଚାର ହେବ ତେବେ ତାହାର ପ୍ରତିକ୍ରମଣ କରିବାକୁ ହେବ । କିନ୍ତୁ କାହାର କ୍ଷତି କରିବାଭଳି ଯଦି ହୋଇଥିବ ତେବେଯାଇ । ଖାଲି ଏମିତି ଆସେ, କିଛି ବି ଆସେ, ଗାଇରେ, ମଇଁଷୀର, ସବୁ ପ୍ରକାରର ବିଚାର ଆସେ, ସେ ସବୁ ତ ଜ୍ଞାନ ହାଜର ରଖି ଦେଖିବାଦ୍ୱାରା ଉଡ଼ିଯିବେ । ତାହା କେବଳ ଦେଖିବାର

ଅଛି । ତାହାର ପ୍ରତିକ୍ରମଣ ଦରକାର ନାହିଁ । ପ୍ରତିକ୍ରମଣ ତ ଯଦି ଆମ ତୀର କାହାକୁ ବାଜିଯାଏ ସେତେବେଳେ କରିବାକୁ ପଡ଼େ ।

ତୁମେ ଏଠି ସତ୍‌ସଙ୍ଗକୁ ଆସିଲ ଏବଂ ଏଠି କିଛି ଲୋକ ଛିଡ଼ା ହୋଇଥିବେ, ସେତେବେଳେ ଯଦି ମନରେ ହୁଏ ଯେ ଏମାନେ ସବୁ କାହିଁକି ଛିଡ଼ା ହୋଇଛନ୍ତି ? ଏହିପରି ମନରେ ଭାବ ବିଗିଡ଼ି ଯାଏ, ସେହି ଭୁଲ ପାଇଁ ତାହାର ତୁରନ୍ତ ପ୍ରତିକ୍ରମଣ କରିବାକୁ ପଡ଼ିବ ।

**ପ୍ରଶ୍ନକର୍ତ୍ତା :** ପ୍ରତିକ୍ରମଣ କର୍ମଫଳର କରାଯାଏ ନା ସୂକ୍ଷ୍ମର ?

**ଦାଦାଶ୍ରୀ :** ସୂକ୍ଷ୍ମର ।

**ପ୍ରଶ୍ନକର୍ତ୍ତା :** ବିଚାରର ନା ଭାବର ?

**ଦାଦାଶ୍ରୀ :** ଭାବର । ବିଚାର ପଛରେ ଭାବ ଥାଏ । ଅତିକ୍ରମଣ ହେଲା ତେବେ ତାହାର ପ୍ରତିକ୍ରମଣ ନିଶ୍ଚିତ କରିବା ଉଚିତ । ଅତିକ୍ରମଣ ତ ମନରେ ଯଦି ଖରାପ ବିଚାର ଆସେ, ଏ ଭଉଣୀ ପାଇଁ ଖରାପ ବିଚାର ଆସିଲା, ସେତେବେଳେ 'ବିଚାର ଭଲ ହେବା ଉଚିତ', ଏପରି କହି ତାହା ବଦଳାଇ ଦେବା । ମନରେ ଯଦି ଏପରି ଲାଗେ ଯେ ଇଏ ଅଯୋଗ୍ୟ ଅଟେ, ତେବେ ଏ ବିଚାର କାହିଁକି ଆସିଲା ? ଆମକୁ ତା'ର ଯୋଗ୍ୟତା-ଅଯୋଗ୍ୟତା ଦେଖିବାର ରାଇଟ୍(ଅଧିକାର) ନାହିଁ । ଆଉ ଅସ୍ପଷ୍ଟ ରୂପରେ କହିବାକୁ ଥିବ ତେବେ କହିବ ଯେ 'ସବୁ ଭଲ ଅଟନ୍ତି', ଭଲ ଅଟନ୍ତି କହିବ ତେବେ କର୍ମଦୋଷ ଲାଗିବ ନାହିଁ, କିନ୍ତୁ ଯଦି ଅଯୋଗ୍ୟ କହିବ ତେବେ ତାହା ଅତିକ୍ରମଣ କୁହାଯିବ, ସେଥିପାଇଁ ତାହାର ପ୍ରତିକ୍ରମଣ ଅବଶ୍ୟ କରିବାକୁ ହେବ ।

ନାପସନ୍ଦ ଜିନିଷ ସଫା ମନରେ ସହନ ହୋଇପାରିବ, ତେବେଯାଇ ବୀତରାଗ ହେବା ।

**ପ୍ରଶ୍ନକର୍ତ୍ତା :** ସଫା ମନ ଅର୍ଥାତ କ'ଣ ?

**ଦାଦାଶ୍ରୀ :** ସଫା ମନ ଅର୍ଥାତ ସାମ୍ନାବାଲା ପାଇଁ ଖରାପ ବିଚାର ନ ଆସେ, ତାହା । ମାନେ କ'ଣ ଯେ ନିମିତ୍ତକୁ କାମୁଡ଼େ ନାହିଁ । ଯଦିବି ସାମ୍ନାବାଲା ପ୍ରତି ଖରାପ ବିଚାର ଆସେ ତେବେ ତୁରନ୍ତ ପ୍ରତିକ୍ରମଣ କରେ ଏବଂ ତାହାକୁ ଧୋଇଦିଏ ।

**ପ୍ରଶ୍ନକର୍ତ୍ତା :** ମନ ସଫା ହୋଇଯାଏ ତାହା ତ ଅନ୍ତିମ ଷ୍ଟେଜ୍‌ର କଥା ଅଟେ ନା ? ଆଉ ଯେପର୍ଯ୍ୟନ୍ତ ସଫା ନ ହୋଇଛି, ସେପର୍ଯ୍ୟନ୍ତ ପ୍ରତିକ୍ରମଣ କରିବାକୁ ପଡ଼ିବ ନା ?

**ଦାଦାଶ୍ରୀ :** ହଁ । ଠିକ୍ କଥା, କିନ୍ତୁ କିଛି ବାବଦରେ ସଫା ହୋଇ ଯାଇଥିବ ଏବଂ କିଛି ବାବଦରେ ହୋଇନଥିବ, ସେ ସବୁ ଷ୍ଟେପିଙ୍ଗ୍ ଅଟେ । ଯେଉଁଠି ସଫା ନ ହୋଇଥିବ ସେଠି ପ୍ରତିକ୍ରମଣ କରିବାକୁ ହେବ ।

ଆମକୁ ଶୁଦ୍ଧାତ୍ମାର ଖାତା ସଫା ରଖିବାର ଅଛି । ଅତଃ ଚନ୍ଦୁଭାଇଙ୍କୁ ରାତିରେ କହିବା ଯେ ଯେଉଁ-ଯେଉଁ ମାନଙ୍କର ଦୋଷ ଦେଖିଛ, ସେମାନଙ୍କ ସହିତ ଖାତା(ହିସାବ) ସଫା କରିଦିଅ । ମନର ଭାବ ବିଗିଡ଼ି ଯାଏ ତେବେ ପ୍ରତିକ୍ରମଣ ଦ୍ୱାରା ସବୁ ସ୍ୱଚ୍ଛ କରିନେବା ଉଚିତ, ଅନ୍ୟ କୌଣସି ଉପାୟ ନାହିଁ । ଇନକମ୍‌ଟ୍ୟାକ୍ସ ବାଲା ବି ଦୋଷୀ ନ ଦେଖାଯାଏ ଏପରି ପ୍ରତିକ୍ରମଣ କରି ରାତିରେ ଶୋଇଯିବା । ପୁରା ଜଗତକୁ ନିର୍ଦ୍ଦୋଷ ଦେଖି, ପରେ ଚନ୍ଦୁଭାଇଙ୍କୁ ଶୋଇଯିବାକୁ କହିବା ।

**ପ୍ରଶ୍ନକର୍ତ୍ତା :** ପ୍ରତିକ୍ରମଣ ପ୍ରତ୍ୟକ୍ଷ ହେବା ଉଚିତ ନା ?

**ଦାଦାଶ୍ରୀ :** ପ୍ରତିକ୍ରମଣ ଯଦି ପରେ ବି ହୁଏ ତେବେ ମଧ୍ୟ ଅସୁବିଧା ନାହିଁ ।

**ପ୍ରଶ୍ନକର୍ତ୍ତା :** ମୁଁ ଯଦି ଆପଣଙ୍କର ଅବଜ୍ଞା କରିଥିବି ଅଶାତନା କରିଥିବି ତେବେ ମୋତେ ଆପଣଙ୍କ ସମ୍ମୁଖକୁ ଆସି ପ୍ରତିକ୍ରମଣ କରିବା ଉଚିତ ନା ?

**ଦାଦାଶ୍ରୀ :** ଯଦି ସମ୍ମୁଖକୁ ଆସି କର ତେବେ ଭଲ କଥା । ତାହା ନହୋଇ ପାରେ ଏବଂ ପରେ କର ତେବେ ମଧ୍ୟ ସେହିପରି ହିଁ ଫଳ ମିଳିବ ।

ମୁଁ କ'ଣ କହୁଛି, 'ତୁମକୁ ଦାଦାଙ୍କ ପାଇଁ ଏପରି ଓଲଟା ବିଚାର ଆସୁଛି, ଏଣୁ ତୁମେ ତାହାର ପ୍ରତିକ୍ରମଣ କରିଚାଲ ।' କାହିଁକିନା ସେ ବିଚରାର କ'ଣ ଦୋଷ ? ବିରାଧକ ସ୍ୱଭାବ ଅଟେ । ଆଜିର ସବୁ ମନୁଷ୍ୟଙ୍କ ସ୍ୱଭାବ ହିଁ ବିରାଧକ ଅଟେ । ଦୁଷମକାଳରେ ବିରାଧକ ଜୀବ ହିଁ ଥାଆନ୍ତି । ଆରାଧକ ଜୀବ ସବୁ ଚାଲିଗଲେ । ଏ ବାକି ଜୀବ ଯେଉଁ ଅଛନ୍ତି, ସେମାନଙ୍କ ମଧ୍ୟରୁ ସୁଧାର ହୋଇପାରିବ, ଏମିତି ବି ଅନେକ ଜୀବ ଅଛନ୍ତି, ବହୁତ ମହାନ ଆତ୍ମା ସବୁ ଅଛନ୍ତି ଏବେ ବି ଏଥିରେ !

ମୋ ପାଇଁ ଓଲଟା ବିଚାର ଆସେ ତେବେ ପ୍ରତିକ୍ରମଣ କରିନେବ । ମନ ତ 'ଜ୍ଞାନୀପୁରୁଷ' ଙ୍କ ପାଇଁ ବି ଓଲଟା ଭାବି ପାରେ । ମନ କ'ଣ କରି ନ ପାରେ ? ଜଳାହୁଆ ମନ ସାମ୍ନାବାଲାକୁ ଜଳାଏ । ଜଳାହୁଆ ମନ ତ ଭଗବାନ ମହାବୀରଙ୍କୁ ବି ଜଳେଇ ଦିଏ ।

**ପ୍ରଶ୍ନକର୍ତ୍ତା :** 'ଯିଏ ଗଲେ ସେ କାହାର କିଛି ମଙ୍ଗଳ କରିପାରିବେ ନାହିଁ ।' ତେବେ ପୁଣି ମହାବୀରଙ୍କ ଅବର୍ଣ୍ଣବାଦ ତାଙ୍କ ପାଖରେ ପହଞ୍ଚେ ?

**ଦାଦାଶ୍ରୀ :** ନା, ସେ ସ୍ୱୀକାର କରନ୍ତି ନାହିଁ । ସେଥିପାଇଁ ରିଟର୍ଣ୍ଣ ୱିଥ୍ ଥ୍ୟାଙ୍କସ୍ ଡବଲ ହୋଇ ଆସିବ । ଏଣୁ ନିଜେ ନିଜପାଇଁ ବାରମ୍ବାର କ୍ଷମା ମାଗିଚାଲ । ଯେପର୍ଯ୍ୟନ୍ତ ସେ ଶବ୍ଦ ଆମକୁ ମନେ ପଡ଼େନାହିଁ, ସେପର୍ଯ୍ୟନ୍ତ ବାରମ୍ବାର କ୍ଷମା ମାଗିଚାଲ । ମହାବୀରଙ୍କ ଅବର୍ଣ୍ଣବାଦ କରିଥିବ, ତେବେ ବାରମ୍ବାର କ୍ଷମା ମାଗିଚାଲିବ, ତେବେ ତୁରନ୍ତ ଧୋଇଯିବ, ବାସ୍ । ତାଙ୍କ ପାଖରେ ପହଞ୍ଚେ ଅବଶ୍ୟ, କିନ୍ତୁ ସେ ସ୍ୱୀକାର କରନ୍ତି ନାହିଁ । ଛଡ଼ା ଯାଇଥିବା ତୀର ପହଞ୍ଚେ ଅବଶ୍ୟ, କିନ୍ତୁ ସେ ସ୍ୱୀକାର କରନ୍ତି ନାହିଁ ।

## ୨୪. ଆଜୀବନ ପ୍ରବାହରେ ବୁଡୁଥିବା ମଣିଷକୁ କୂଳରେ ପହଞ୍ଚାଏ ଜ୍ଞାନ

**ପ୍ରଶ୍ନକର୍ତ୍ତା :** ମନେ ପକାଇଲେ ପୂର୍ବର ଦୋଷ ଦେଖାଯାଇ ପାରିବ ?

**ଦାଦାଶ୍ରୀ :** ବାସ୍ତବରେ ପୂର୍ବର ଦୋଷ ଉପଯୋଗ ଦ୍ୱାରା ହିଁ ଦେଖାଯାଇ ପାରିବ, ମନେ ପକାଇଲେ ଦେଖାଯିବ ନାହିଁ । ମନେ ପକାଇବାରେ ତ ମୁଣ୍ଡ କୁଣ୍ଡେଇବାକୁ ପଡ଼େ । ଆବରଣ ଆସିଯାଏ ସେଥିପାଇଁ ମନେ ପକାଇବାକୁ ପଡ଼େ ନା ? ଯଦି କାହା ସହିତ ଝଂଝଟ୍ ହୋଇଯାଏ ତେବେ ତା'ର ପ୍ରତିକ୍ରମଣ କରିଲେ ସେ ବ୍ୟକ୍ତି (ଚିତ୍ତରେ) ହାଜର ହୋଇଯିବ ନିଶ୍ଚିତ, କେବଳ ସେହିଭଳି ଉପଯୋଗ ହିଁ ରଖିବାର ଅଛି । ଆମ ମାର୍ଗରେ ମନେ ପକାଇବା ଭଳି କିଛି ବି ନାହିଁ । ମନେ ପକାଇବା ତ 'ମେମୋରି' ର ଅଧୀନରେ । ଯାହା ମନେ ପଡ଼େ ତାହା ପ୍ରତିକ୍ରମଣ କରାଇବା ପାଇଁ ମନେ ପଡ଼େ, ସଫା କରାଇବା ପାଇଁ ।

'ଏହି ସଂସାରର କୌଣସି ବି ବିନାଶୀ ଜିନିଷ ମୋତେ ଦରକାର ନାହିଁ' ଏପରି ତୁମେ ସ୍ଥିର କରିଛ ନା ? ତଥାପି କାହିଁକି ମନେ ପଡୁଛି ? ଏଣୁ ପ୍ରତିକ୍ରମଣ କର । ପ୍ରତିକ୍ରମଣ କରିବା ସତ୍ତ୍ୱେ ବି ଯଦି ପୁଣି ମନେ ପଡ଼େ ତେବେ ଆମେ ବୁଝିବା ଯେ ଏବେ ବି ଏହି ଅଭିଯୋଗ ଅଛି ! ଏଣୁ ପୁଣି ପ୍ରତିକ୍ରମଣ କରିବାର ହିଁ ଅଛି ।

ମନେପଡ଼େ, ତାହା ରାଗ୍-ଦ୍ୱେଷ କାରଣରୁ । ଯଦି ମନେ ପଡୁ ନଥାନ୍ତା ତେବେ ଅଡୁଆ ହୋଇ ପଡ଼ିଥିବା ସମସ୍ୟା ଭୁଲି ଯାଇଥାନ୍ତେ । ତୁମକୁ କାହିଁକି କେହି ଫରେନର୍ସ ମନେ ପଡୁ ନାହାନ୍ତି ଆଉ ମରିଥିବା ଲୋକେ କାହିଁକି ମନେ ପଡୁଛନ୍ତି ? ଏହା ହିସାବ ଅଟେ ଏବଂ ତାହା ରାଗ୍-ଦ୍ୱେଷ କାରଣରୁ ଅଟେ । ତାହାର ପ୍ରତିକ୍ରମଣ କରିବା ଦ୍ୱାରା ଆସକ୍ତି ଖତମ ହୋଇଯିବ । ଇଚ୍ଛା ହୁଏ କାରଣ ତାହାର ପ୍ରତ୍ୟାଖ୍ୟାନ ହୋଇନାହିଁ ସେଥିପାଇଁ । ମନେ ପଡ଼େ କାରଣ ପ୍ରତିକ୍ରମଣ କରିନାହାନ୍ତି ସେଥିପାଇଁ ।

**ପ୍ରଶ୍ନକର୍ତ୍ତା :** ପ୍ରତିକ୍ରମଣ ମାଲିକି ଭାବର ହୁଏ ନା ?

**ଦାଦାଶ୍ରୀ :** ମାଲିକି ଭାବରେ ପ୍ରତ୍ୟାଖ୍ୟାନ ହୁଏ ଏବଂ ଦୋଷର ପ୍ରତିକ୍ରମଣ ହୁଏ ।

**ପ୍ରଶ୍ନକର୍ତ୍ତା :** ପ୍ରତିକ୍ରମଣ କରିବା ସତ୍ତ୍ୱେ ବି ଯଦି ବାରମ୍ବାର ସେ ଦୋଷ ମନେ ପଡ଼େ ତେବେ କ'ଣ ତାହାର ଅର୍ଥ ଏହା ଯେ, ସେଥିରୁ ଏବେ ବି ମୁକ୍ତ ହୋଇନାହୁଁ ?

**ଦାଦାଶ୍ରୀ :** ଏ ପିଆଜର ଏକ ପରସ୍ତ ବାହାରି ଯାଏ ତେବେ ଦ୍ୱିତୀୟ ପରସ୍ତ ଆପେ ଆପେ ଆସି ଉଭା ରହିବ । ସେହିପରି ଅନେକ ପରସ୍ତବାଲା ଅଟେ ଏ ଦୋଷ । ସେଥିପାଇଁ ଏକ ପ୍ରତିକ୍ରମଣ କରିବା ଦ୍ୱାରା ଏକ ପରସ୍ତ ହଟିବ, ଏପରି କରି-କରି ଶହେ ପ୍ରତିକ୍ରମଣ କରିବା ପରେ ସେ ଦୋଷ ଖତମ ହେବ । କିଛି ଦୋଷର ପାଞ୍ଚଥର ପ୍ରତିକ୍ରମଣ କରିବା ତେବେ ତାହା ଖତମ ହୁଏ, କିଛି ର ଦଶ ଏବଂ କିଛିର ଶହେ ହୁଏ, ତା'ର ଯେତିକି ପରସ୍ତ ଥାଏ ସେତିକି ପ୍ରତିକ୍ରମଣ ହୁଏ । ଲମ୍ବା ଚାଲିଲା ଅର୍ଥାତ ଲମ୍ବା ଦୋଷ ଅଟେ ।

**ପ୍ରଶ୍ନକର୍ତ୍ତା :** ଯାହା ମନେ ପଡ଼େ, ତାହାର ପ୍ରତିକ୍ରମଣ କରିବା ଉଚିତ ଏବଂ ଯାହାର ଇଚ୍ଛା ହୁଏ ତାହାର ପ୍ରତ୍ୟାଖ୍ୟାନ କରିବା ଉଚିତ । ଏହା ଟିକିଏ ବୁଝାନ୍ତୁ ।

**ଦାଦାଶ୍ରୀ :** ଯେବେ ମନେ ପଡ଼େ ତେବେ ବୁଝିବ ଯେ ଏଠାରେ ବେଶୀ ଗାଢ଼ ଅଛି ତେବେ ସେଠାରେ ପ୍ରତିକ୍ରମଣ କରିଚାଲିବା ତେବେ ସବୁ ଚାଲିଯିବ ।

**ପ୍ରଶ୍ନକର୍ତ୍ତା :** ତାହା ଯେତେଥର ମନେ ପଡ଼େ ସେତେଥର କରିବାର ଅଛି ?

**ଦାଦାଶ୍ରୀ :** ହଁ, ସେତେଥର କରିବାର ଅଛି । ଆମେ କରିବାର ଭାବ ରଖିବା । ଏପରି ଅଟେ ଯେ, ମନେ ପଡ଼ିବା ପାଇଁ ସମୟ ତ ଦରକାର ନା ! ରାତିରେ କ'ଣ କିଛି ମନେ ପଡ଼େ ?

**ପ୍ରଶ୍ନକର୍ତ୍ତା :** ତାହା ତ ଯଦି କିଛି ସଂଯୋଗ ଥିବ ତେବେ ।

**ଦାଦାଶ୍ରୀ :** ହଁ, ସଂଯୋଗ କାରଣରୁ ।

**ପ୍ରଶ୍ନକର୍ତ୍ତା :** ଆଉ ଇଚ୍ଛା ହେବ ତେବେ ?

**ଦାଦାଶ୍ରୀ :** ଇଚ୍ଛା ହେବା ଅର୍ଥାତ ସ୍ଥୂଳ ବୃତ୍ତି ହେବା । ପୂର୍ବରୁ ଆମେ ଯେଉଁ ଭାବ କରିଛେ, ସେହି ଭାବ ଯଦି ପୁଣି ସୃଷ୍ଟି ହୁଏ, ତେବେ ସେଠାରେ ପ୍ରତ୍ୟାଖ୍ୟାନ କରିବାର ଅଛି ।

**ପ୍ରଶ୍ନକର୍ତ୍ତା :** ସେତେବେଳେ ଆପଣ କହିଥିଲେ, ପ୍ରତ୍ୟେକଥର ଏପରି କହିବ

ଯେ ଏବେ ଏହା ଦରକାର ନାହିଁ ।

**ଦାଦାଶ୍ରୀ :** ଏହା ମୋର ନୁହେଁ । ସମର୍ପିତ କରୁଛି । ଅଜ୍ଞାନତାବଶ ମୁଁ ଏ ସମସ୍ତଙ୍କୁ ଡାକିଥିଲି । କିନ୍ତୁ ଆଜି ଏମାନେ ମୋର ନୁହନ୍ତି, ସେଥିପାଇଁ ସମର୍ପିତ କରୁଛି । ମନ-ବଚନ-କାୟାରୁ ସମର୍ପିତ କରୁଛି । ଏବେ ମୋତେ କିଛି ଦରକାର ନାହିଁ । ଏହି ସୁଖକୁ ମୁଁ ଅଜ୍ଞାନ ଦଶାରେ ଡାକିଥିଲି, କିନ୍ତୁ ଆଜି ଏ ସୁଖ ମୋର ନୁହେଁ, ସେଥିପାଇଁ ସମର୍ପିତ କରୁଛି ।

ଏହି ଅକ୍ରମ ବିଜ୍ଞାନର ହେତୁ ହିଁ ପୁରା ଶୁଟ୍ ଅନ୍ ସାଇଟ୍ ପ୍ରତିକ୍ରମଣର ଅଟେ । ସେହି ବେସମେଣ୍ଟ(ମୂଳଦୁଆ) ଉପରେ ଛିଡ଼ା ହୋଇଛି । ଭୁଲ କାହାର ନାହିଁ । ସାମ୍ନାବାଲାକୁ ଆମ ନିମିତ୍ତରୁ ଯଦି କିଛି କ୍ଷତି ହୁଏ, ତେବେ ଦ୍ରବ୍ୟକର୍ମ-ଭାବକର୍ମ-ନୋକର୍ମରୁ ମୁକ୍ତ ଏପରି ତା'ର ଶୁଦ୍ଧାତ୍ମାକୁ ସ୍ମରଣ କରି ପ୍ରତିକ୍ରମଣ କରିବା ଉଚିତ ।

**ପ୍ରଶ୍ନକର୍ତ୍ତା :** କିନ୍ତୁ ପ୍ରତ୍ୟେକଥର ପୁରା ଲମ୍ବା କହିବୁ ?

**ଦାଦାଶ୍ରୀ :** ନା, ଏପରି କିଛି ନାହିଁ । ଶର୍ଟରେ କରିନେବ । ସାମ୍ନାବାଲାର ଶୁଦ୍ଧାତ୍ମାକୁ ହାଜର କରି ଫୋନ୍ ଲଗାଇବ ଯେ 'ଏହି ଭୁଲ ହୋଇଗଲା, କ୍ଷମା କରନ୍ତୁ ।'

ଘରଲୋକମାନଙ୍କର ବି ପ୍ରତିଦିନ ପ୍ରତିକ୍ରମଣ କରିବା ଉଚିତ । ତୁମ ମଦର, ଫାଦର, ଭାଇ, ଭଉଣୀ ସମସ୍ତଙ୍କର । ପ୍ରତିଦିନ ପ୍ରତିକ୍ରମଣ କରିବାକୁ ପଡ଼ିବ । ସବୁ କୁଟୁମ୍ବବାଲାଙ୍କର, କାହିଁକିନା ସେମାନଙ୍କ ସହିତ ବହୁତ *ଚିକ୍‌ଣି* (ଗାଢ଼) ଫାଇଲ୍ ଥାଏ ।

ଯଦି ପ୍ରତିକ୍ରମଣ କରିବ, ଯଦି ଏକଘଣ୍ଟା କୁଟୁମ୍ବ ଲୋକଙ୍କର ପ୍ରତିକ୍ରମଣ କରିବ, ନିଜ ପରିବାରବାଲାଙ୍କୁ ମନେ ପକାଇ, ନିକଟରୁ ନେଇ ଦୂର ସମ୍ପର୍କୀୟ ସବୁ, ଭାଇମାନେ, ତାଙ୍କ ସ୍ତ୍ରୀ ମାନେ, ଚାଚା, ଚାଚାଙ୍କ ପୁଅ, ସେମାନେ ସମସ୍ତେ, ଗୋଟିଏ ଫ୍ୟାମିଲି(ପରିବାର) ହୋଇଥିବ ତେବେ ଦୁଇ-ତିନି-ଚାରି ପିଢ଼ି ପର୍ଯ୍ୟନ୍ତ, ସେ ସମସ୍ତଙ୍କୁ ମନେ ପକାଇ, ପ୍ରତ୍ୟେକଙ୍କ ପାଇଁ ଯଦି ଏକ-ଏକ ଘଣ୍ଟା ପ୍ରତିକ୍ରମଣ ହେବ, ତେବେ ଭିତରେ ଭୟଙ୍କର ପାପ ଭସ୍ମୀଭୂତ ହୋଇଯିବ । ଏବଂ ଆମ ତରଫରୁ ସେ ସମସ୍ତଙ୍କ ମନ ସଫା ହୋଇଯିବ । ସେଥିପାଇଁ ଆମ ସମସ୍ତ ନିକଟ ସମ୍ପର୍କୀୟଙ୍କୁ ମନେ ପକାଇ-ପକାଇ ପ୍ରତିକ୍ରମଣ କରିବା ଉଚିତ । ଆଉ ଯଦି ରାତିରେ ନିଦ ଆସୁ ନଥିବ ତେବେ ସେହି ସମୟରେ ଏହା ସେଟ୍ କଲେ ତେବେ ଚାଲିଲା । କ'ଣ ଏପରି ସେଟିଙ୍ଗ୍ କରନ୍ତି ନାହିଁ ? ଏପରି ଏହି ବ୍ୟବସ୍ଥା, ସେ ଫିଲ୍ମ ଆରମ୍ଭ ହୋଇଯିବ ତେବେ ସେହି ସମୟରେ ବହୁତ ଆନନ୍ଦ ଆସିବ । ସେ ଆନନ୍ଦ ଧାରଣ କରିହେବ ନାହିଁ !

କାହିଁକିନା ଯେତେବେଳେ ପ୍ରତିକ୍ରମଣ କରନ୍ତି, ସେତେବେଳେ ଆତ୍ମାର ସମ୍ପୂର୍ଣ୍ଣ ଶୁଦ୍ଧ ଉପଯୋଗ ରହେ । ଅର୍ଥାତ ମଝିରେ କାହାର ଦଖଲ ହୁଏ ନାହିଁ ।

ପ୍ରତିକ୍ରମଣ କିଏ କରେ ? ଚନ୍ଦୁଭାଇ କରନ୍ତି, କାହାର କରନ୍ତି ? ତେବେ କହିବା ଏହି କୁଟୁମ୍ବବାଲାଙ୍କୁ ମନେ ପକାଇ-ପକାଇ କରନ୍ତି । ଆତ୍ମା ଦେଖିବାବାଲା ଅଟେ, ସେ କେବଳ ଦେଖୁଥାଏ । ଅନ୍ୟ କୌଣସି ଦଖଲ ହିଁ ନାହିଁ ସେଥିପାଇଁ ବହୁତ ଶୁଦ୍ଧ ଉପଯୋଗ ରହେ ।

ପ୍ରତିକ୍ରମଣ ତ ଥରେ କରାଇଥିଲି, ମୋ ଉପସ୍ଥିତିରେ, ନିଜେ ମୁଁ ହିଁ କରାଇଥିଲି, ବହୁତ ବର୍ଷ ପୂର୍ବର କଥା କହୁଛି ଆଉ ତାହା ବିଷୟ ସମ୍ବନ୍ଧିତ କରାଇଥିଲି । ତେବେ ତାହା କରୁ କରୁ ସମସ୍ତେ ଏତେ ଗଭୀରତାକୁ ଚାଲିଗଲେ ଯେ, ପରେ ଘରକୁ ଯିବା ପରେ ମଧ୍ୟ ବନ୍ଦ ହେଉନଥିଲା । ଶୋଇବା ସମୟରେ ବି ବନ୍ଦ ହେଉନଥିଲା । ଖାଇବା ସମୟରେ ବି ବନ୍ଦ ହେଉନଥିଲା । ପୁଣି ମୋତେ ବନ୍ଦ କରିବାକୁ ପଡ଼ିଲା । ଷ୍ଟପ୍ କରିବାକୁ ପଡ଼ିଲା ! ଫଁଶିଯାଇଥିଲେ ସବୁ, ନୁହେଁ ? ! ମନକୁ ମନ ନିରନ୍ତର ପ୍ରତିକ୍ରମଣ, ରାତି-ଦିନ ଚାଲୁ ରହିଥାଏ । ଏବେ ପ୍ରତିକ୍ରମଣ କରିବା ପରେ, 'ବନ୍ଦ କର, ଏବେ ଦୁଇ ଘଣ୍ଟା ହୋଇଗଲାଣି' ଏପରି କହିବା ପରେ ମଧ୍ୟ ଆପେ ଆପେ ପ୍ରତିକ୍ରମଣ ଚାଲୁରହିଥାଏ । ଯଦି ବନ୍ଦ କରିବାକୁ କହିବା ତଥାପି ବନ୍ଦ ହେଉନଥିଲା । ପୁରା ମେଶୀନାରୀ ଚାଲୁ ହୋଇଗଲା ସେଥିପାଇଁ ଭିତରେ ଚାଲି ହିଁ ଥାଏ ।

'ତୁମକୁ' 'ଚନ୍ଦୁଭାଇ'ଙ୍କୁ ଏତିକି କହିବାକୁ ପଡ଼ିବ ଯେ ପ୍ରତିକ୍ରମଣ କରିଚାଲ । ତୁମ ଘରର ସମସ୍ତ ସଦସ୍ୟଙ୍କ ସହିତ, ତୁମକୁ କିଛି ନା କିଛି ପୂର୍ବରୁ ଦୁଃଖ ହୋଇଥିବ, ତାହାର ତୁମକୁ ପ୍ରତିକ୍ରମଣ କରିବାର ଅଛି । 'ସଂଖ୍ୟାତ୍ ଅବା ଅସଂଖ୍ୟାତ୍ ଜନ୍ମରେ ଯେଉଁ ରାଗ୍-ଦ୍ୱେଷ, ବିଷୟ, କଷାୟର ଦୋଷ କରିଥିବି, ସେସବୁ ପାଇଁ କ୍ଷମା ମାଗୁଛି ।' ଏହିପରି ପ୍ରତିଦିନ ଜଣେ-ଜଣେ ବ୍ୟକ୍ତିଙ୍କର, ଏପରି ଘରର ପ୍ରତ୍ୟେକ ବ୍ୟକ୍ତିଙ୍କୁ ସ୍ମରଣ କରି କରି କରିବା ଉଚିତ । ପରେ ଆଖପାଖର, ଅଡ଼ୋଶୀ-ପଡ଼ୋଶୀଙ୍କୁ ସମସ୍ତଙ୍କୁ ନେଇ ଉପଯୋଗ ରଖି ଏହା କରିଚାଲିବା ଉଚିତ । ତୁମେ ଯଦି କରିବ ତା'ପରେ ଏହି ବୋଝ ହାଲୁକା ହୋଇଯିବ । ମନକୁ ମନ ହାଲୁକା ହେବ ନାହିଁ । ମୁଁ ସାରା ସଂସାର ସହ ଏହିପରି ନିବାରଣ କରିଥିଲି । ପ୍ରଥମେ ଏପରି ନିବାରଣ କରିଥିଲି, ସେଥିପାଇଁ ତ ଏ ଛୁଟକାରା ହେଲା । ଯେପର୍ଯ୍ୟନ୍ତ ତୁମ ମନରେ ମୋ ପାଇଁ ଦୋଷ ଅଛି, ସେପର୍ଯ୍ୟନ୍ତ ମୋତେ ଶାନ୍ତିରେ ରହିବାକୁ ଦେବ ନାହିଁ ! ଏଣୁ, ଆମେ ଯେବେ ଏପରି ପ୍ରତିକ୍ରମଣ କରନ୍ତି, ତେବେ ସେଠାରେ ଧୋଇଯାଏ ।

ପ୍ରତିକ୍ରମଣ ତ ତୁମକୁ ବହୁତ କରିବା ଉଚିତ । ତୁମ ସର୍କଲରେ ଯଦି ପଚାଶ-ଶହେ ବ୍ୟକ୍ତି ଥିବେ, ଯେଉଁମାନଙ୍କୁ ତୁମେ ହଇରାଣ କରିଥିବ, ଖାଲି ସମୟରେ ବସି ସେ ସମସ୍ତଙ୍କର ଏକ-ଏକ ଘଣ୍ଟା, ଜଣ-ଜଣକୁ ମନେ ପକାଇ-ପକାଇ ପ୍ରତିକ୍ରମଣ କରିବ । ଯେତେ ଜଣଙ୍କୁ ହଇରାଣ କରିଛ, ତାହା ପୁଣି ଧୋଇବାକୁ ତ ପଡ଼ିବ ନା ? ପରେ ଜ୍ଞାନ ପ୍ରକଟ ହେବ ।

ପୁଣି, 'ଏହି ଜନ୍ମ, ଗତ ଜନ୍ମ, ଗତ ସଂଖ୍ୟାତ ଜନ୍ମ, ଗତ ଅସଂଖ୍ୟାତ ଜନ୍ମରେ, ଗତ ଅନନ୍ତ ଜନ୍ମରେ ଦାଦା ଭଗବାନଙ୍କ ସାକ୍ଷୀରେ, କୌଣସି ବି ଧର୍ମର ସାଧୁ-ଆଚାର୍ଯ୍ୟ ମାନଙ୍କର ଯେଉଁ-ଯେଉଁ ଅଶାତନା, ବିରାଧନା କରିଥିବି ଅଥବା କରାଇଥିବି ତେବେ ତାହା ପାଇଁ କ୍ଷମା ମାଗୁଛି । ଦାଦା ଭଗବାନଙ୍କ ସାକ୍ଷୀରେ କ୍ଷମା ମାଗୁଛି । କିଞ୍ଚିତମାତ୍ର ଅପରାଧ ନ ହେଉ ଏପରି ଶକ୍ତି ଦିଅନ୍ତୁ ।' ଏହିପରି ସବୁ ଧର୍ମର କରିବ ।

ଆରେ, ସେ ସମୟରେ ଅଜ୍ଞାନ ଦଶାରେ ମୋ ଅହଂକାର ବହୁତ ଭାରୀ ଥିଲା, 'ଅମକ ଏମିତି ଅଟେ, ସେମିତି ଅଟେ' ସେତେବେଳେ ତିରସ୍କାର, ତିରସ୍କାର, ତିରସ୍କାର ହିଁ ତିରସ୍କାର.... ଏବଂ କାହାର ପ୍ରଶଂସା ବି କରୁଥିଲି । ଗୋଟେ ପଟେ ଜଣଙ୍କର ପ୍ରଶଂସା କରୁଥିଲି ଏବଂ ଅନ୍ୟର ତିରସ୍କାର କରୁଥିଲି । ପୁଣି ୧୯୫୮ ରେ ଜ୍ଞାନ ହେଲା ସେବେଠୁ 'ଏ. ଏମ. ପଟେଲ' ଙ୍କୁ କହିଦେଲି ଯେ, 'ଏ ଯେଉଁ ତିରସ୍କାର କରିଛ, ଏବେ ସେ ସବୁକୁ ସାବୁନ ଲଗାଇ ଧୋଇଦିଅ', ସେତେବେଳେ ପ୍ରତ୍ୟେକଙ୍କୁ ମନେ ପକାଇ-ପକାଇ ବାରମ୍ୱାର ସବୁ ଧୋଇଚାଲିଲି । ଏପଟ ପଡ଼ୋଶୀ, ସେପଟ ପଡ଼ୋଶୀ, ଏପଟ କୁଟୁମ୍ବ ଲୋକ, ମାମୁଁ, ଗୋଷା, ସମସ୍ତଙ୍କ ସହିତ ତିରସ୍କାର ହୋଇଥିଲା, ସେ ସମସ୍ତଙ୍କର ଧୋଇ ଦେଲି ।

**ପ୍ରଶ୍ନକର୍ତ୍ତା :** ମନରେ ପ୍ରତିକ୍ରମଣ କରିଥିଲେ, ସାମ୍ନା-ସାମ୍ନୀ ନୁହେଁ ?

**ଦାଦାଶ୍ରୀ :** ମୁଁ ଅମ୍ବାଲାଲ ପଟେଲଙ୍କୁ କହିଲି ଯେ 'ଏହା ତୁମେ ଓଲଟା କାମ କରିଛ, ସେ ସବୁ ମୋତେ ଦେଖାଯାଉଛି । ଏବେ ତ ସେ ସବୁ ଓଲଟା କରିଥିବା କାମକୁ ଧୋଇଦିଅ !' ଏହା ଦ୍ୱାରା ସେ କ'ଣ କରିବା ଆରମ୍ଭ କଲେ ? 'କିପରି ଧୋଇବି ?' ସେତେବେଳେ ମୁଁ ବୁଝାଇଲି ଯେ ସେମାନଙ୍କୁ ମନେ ପକାଅ । ନଗୀନଦାସକୁ ଗାଳି ଦେଇଛ ଏବଂ ସାରା ଜୀବନ ଡରେଇଛ, ତିରସ୍କାର କରିଛ, ସେ ସବୁର ପୁରା ବର୍ଣ୍ଣନ କରି, ଏବଂ 'ହେ ନଗୀନଦାସର ମନ-ବଚନ-କାୟାର ଯୋଗ, ଦ୍ରବ୍ୟକର୍ମ-ଭାବକର୍ମ-ନୋକର୍ମରୁ ଭିନ୍ନ ପ୍ରକଟ ଶୁଦ୍ଧାତ୍ମା ଭଗବାନ ! ନଗୀନଦାସର ଶୁଦ୍ଧାତ୍ମା ଭଗବାନ ! ନଗୀନଦାସକୁ ବାରମ୍ବାର କ୍ଷମା ମାଗୁଛି, ଦାଦା ଭଗବାନଙ୍କ ସାକ୍ଷୀରେ କ୍ଷମା ମାଗୁଛି ।

ଆଉ ଏପରି ଦୋଷ କରିବି ନାହିଁ।' ଅର୍ଥାତ ତୁମେ ଏହିପରି କର। ପୁଣି ତୁମେ ସାମ୍ନାବାଲାର ଚେହେରାରେ ପରିବର୍ତ୍ତନ ଦେଖିନେବ। ତା' ଚେହେରାରେ ପରିବର୍ତ୍ତନ ଲାଗିବ। ତୁମେ ପ୍ରତିକ୍ରମଣ ଏଠି କରିବ ଏବଂ ସେଠି ପରିବର୍ତ୍ତନ ହେବ।

ମୁଁ କେତେ ଧୋଇଲି, ତାହାପରେ ଯାଇ ଖାତାର ହିସାବ ପୁରା ହେଲା। କେଉଁ କାଳରୁ ମୁଁ ଧୋଇ ଆସୁଥିଲି, ତେବେଯାଇ ଖାତାର ହିସାବ ପୁରାହେଲା। ତୁମକୁ ତ ମୁଁ ରାସ୍ତା ଦେଖାଇ ଦେଲି, ସେଥିପାଇଁ ଜଲଦୀ ଛୁଟିଯିବ। ମୁଁ ତ କେଉଁ କାଳରୁ ନିଜେ ନିଜେ ଧୋଇ ଆସିଥିଲି।

ଆମକୁ ତ ପ୍ରତିକ୍ରମଣ କରିନେବାର ଅଛି। ଅର୍ଥାତ ଆମେ ଉତ୍ତରଦାୟିତ୍ୱରୁ ମୁକ୍ତ। ମୋତେ ପ୍ରଥମେ-ପ୍ରଥମେ ସବୁ ଲୋକ ଆଟାକ୍ କରୁଥିଲେ ନା! କିନ୍ତୁ ପରେ ସବୁ ଥକିଗଲେ। ଯଦି ନିଜ ତରଫରୁ ପ୍ରତିକାର ହେବ ତେବେ ସାମ୍ନାବାଲା ଥକିବ ନାହିଁ। ଏହି ଜଗତ କାହାକୁ ବି ମୋକ୍ଷରେ ଯିବାକୁ ଦେବ ଏପରି ନୁହେଁ। ଏତେ ଅଧିକ ବୁଦ୍ଧିବାଲା ଜଗତ ଅଟେ। ଏଥିରେ ଯଦି ସାବଧାନ ହୋଇ ଚାଲେ, ସମ୍ଭାଳି କରି ଚାଲେ ତେବେ ମୋକ୍ଷରେ ଯାଇପାରିବ।

ଏହି ପ୍ରତିକ୍ରମଣ ଆରମ୍ଭ କରି ତ ଦେଖ, ପୁଣି ତୁମ ଘରେ ସବୁ ଲୋକଙ୍କ ମଧ୍ୟରେ ଚେଞ୍ଜ ଆସିଯିବ। ଜାଦୁଗରୀ ଚେଞ୍ଜ ଆସିଯିବ, ଜାଦୁଗରୀ ପ୍ରଭାବ!!

ଏପରି ଅଟେ, ଯେପର୍ଯ୍ୟନ୍ତ ସାମ୍ନାବାଲାର ଦୋଷ ନିଜ ମନରେ ଅଛି ସେପର୍ଯ୍ୟନ୍ତ ଶାନ୍ତିରେ ରହିବାକୁ ଦିଏ ନାହିଁ । ପ୍ରତିକ୍ରମଣ କରିବ ତେବେ ତାହା ଲିଭିଯିବ। ରାଗ୍-ଦ୍ୱେଷବାଲା ପ୍ରତ୍ୟେକ *ଚିକଣି* ଫାଇଲ୍ (ଗାଢ଼ ଋଣାନୁବନ୍ଧ୍ ବାଲା ବ୍ୟକ୍ତି ଅଥବା ସଂଯୋଗ) କୁ ଉପଯୋଗ ରଖି ପ୍ରତିକ୍ରମଣ କରି ଶୁଦ୍ଧ କରିବାର ଅଛି। ରାଗ୍ ର ଫାଇଲ୍ ହୋଇଥିବ, ତାହାର ତ ଖାସ୍ ପ୍ରତିକ୍ରମଣ କରିବା ଉଚିତ।

ତୁମେ ଗଦି ଉପରେ ଶୋଇ ଯାଇଥିବ ତେବେ ଯେଉଁଠି-ଯେଉଁଠି ବାଲିଗରଡ଼ା ଖେଞ୍ଚି ହୁଏ, ସେଠୁ ତୁମେ କାଢିଦେବ ନା ନାହିଁ? ଏହି ପ୍ରତିକ୍ରମଣ ତ ଯେଉଁଠି-ଯେଉଁଠି ଖେଞ୍ଚି ହେଉଥିବ ସେହିଠାରେ କରିବାର ଅଛି। ତୁମକୁ ଯେଉଁଠି ଖେଞ୍ଚି ହେଉଛି ସେଠୁ ତୁମେ କାଢ଼ି ଦିଅ, ତା'କୁ ଯେଉଁଠି ଖେଞ୍ଚି ହେଉଛି ସେଠୁ ସେ କାଢ଼ିଦେବ। ପ୍ରତିକ୍ରମଣ ପ୍ରତ୍ୟେକ ବ୍ୟକ୍ତିଙ୍କର ଅଲଗା-ଅଲଗା ଅଟେ।

କାହା ପ୍ରତି ବି ଅତିକ୍ରମଣ ହୋଇଯାଇଥିବ ତେବେ, ଦିନସାରା ତା' ନାମ ନେଇ ପ୍ରତିକ୍ରମଣ କରିବାକୁ ହେବ, ତେବେଯାଇ ନିଜେ ମୁକ୍ତ ହୋଇପାରିବ। ଯଦି

ଦୁହେଁ ସାମ୍ନାସାମ୍ନି ପ୍ରତିକ୍ରମଣ କରିବେ ତେବେ ଜଲଦୀ ମୁକ୍ତ ହୋଇଯିବେ । ପାଞ୍ଚହଜାର ଥର ତୁମେ ପ୍ରତିକ୍ରମଣ କର ଏବଂ ପାଞ୍ଚହଜାର ଥର ସାମ୍ନାବାଲା ପ୍ରତିକ୍ରମଣ କରେ ତେବେ ଜଲଦୀ ଛୁଟକାରା ହେବ । କିନ୍ତୁ ଯଦି ସାମ୍ନାବାଲା ନ କରେ ଆଉ ତୁମକୁ ମୁକୁଳିବାର ହିଁ ଅଛି, ତେବେ ଦଶହଜାର ଥର ପ୍ରତିକ୍ରମଣ କରିବାକୁ ହେବ ।

**ପ୍ରଶ୍ନକର୍ତ୍ତା :** ଯେବେ ଏପରି କିଛି ରହିଯାଏ ସେତେବେଳେ ମନରେ ବହୁତ ହୁଏ ଯେ ଏହା ରହିଗଲା ।

**ଦାଦାଶ୍ରୀ :** ଏପରି କ୍ଳେଶ ରଖିବ ନାହିଁ ପରେ । ପରେ ଦିନେ ବସି ସବୁର ଏକା ସାଥୀରେ ପ୍ରତିକ୍ରମଣ କରିଦେବ । ଯାହାର-ଯାହାର ଥିବ, ଚିହ୍ନା-ଜଣା ଲୋକଙ୍କର, ଯେଉଁମାନଙ୍କ ସହିତ ବେଶୀ ଅତିକ୍ରମଣ ହେଉଥିବ, ସେମାନଙ୍କ ନାମ ନେଇ ଏକ ଘଣ୍ଟା ପ୍ରତିକ୍ରମଣ କରିନେବ ତେବେ ଉଡ଼ିଯିବ ପୁଣି । କିନ୍ତୁ ଆମକୁ ଏପରି ବୋଝ ରଖିବାର ନାହିଁ ।

ଏହା ଅପୂର୍ବ କଥା ଅଟେ, ପୂର୍ବରୁ କେବେ ନ ଶୁଣିଥିବା, ନ ପଢ଼ିଥିବା, ନ ଜାଣିଥିବା, ସେହିପରି କଥା ଜାଣିବା ପାଇଁ ଏହି ପରିଶ୍ରମ ।

ଆମର ଏଠି ପ୍ରତିକ୍ରମଣ କରାଇବା ପାଇଁ ବସାଏ, ତାହା ପରେ କ'ଣ ହୁଏ ? ଭିତରେ ଦୁଇଘଣ୍ଟା ପ୍ରତିକ୍ରମଣ କରାଏ ନା, ଯେ ପିଲାଦିନରୁ ନେଇ ଆଜି ପର୍ଯ୍ୟନ୍ତ ଯେଉଁ ଯେଉଁ ଦୋଷ ହୋଇଥିବ ସେସବୁକୁ ମନେ ପକାଇ ପ୍ରତିକ୍ରମଣ କରିଦିଅ, ସାମ୍ନାବ୍ୟକ୍ତିର ଶୁଦ୍ଧାତ୍ମାକୁ ଦେଖି ଏପରି କୁହେ । ଏବେ କମ ବୟସରୁ, ଯେବେଠୁ ସମଝଶକ୍ତି ଆରମ୍ଭ ହୁଏ, ସେହିଦିନରୁ ନେଇ ଆଜି ପର୍ଯ୍ୟନ୍ତ ସବୁର ପ୍ରତିକ୍ରମଣ କରିବାରେ ଲାଗନ୍ତି । ଯେବେ ଏପରି ପ୍ରତିକ୍ରମଣ କରନ୍ତି, ସେତେବେଳେ ତା'ର ସବୁ ଦୋଷର ବଡ଼ ବଡ଼ ଭାଗ ଆସିଯାଏ । ପରେ ପୁଣି ଯେବେ ପ୍ରତିକ୍ରମଣ କରେ, ସେତେବେଳେ ପୁଣି ଛୋଟ-ଛୋଟ ଦୋଷ ବି ଆସିଯାଏ । ପରେ ଯେବେ ପୁଣି ଥରେ ପ୍ରତିକ୍ରମଣ କରେ, ତେବେ ତାହାଠାରୁ ବି ଛୋଟ ଦୋଷ ଆସିଯାଏ, ଏହିପରି ସେହି ଦୋଷର ସମସ୍ତ ଭାଗ ପୁରାପୁରି ଖଲାସ କରିଦିଅନ୍ତି ।

ଦୁଇଘଣ୍ଟାର ପ୍ରତିକ୍ରମଣରେ ପୁରା ଜୀବନର ପଛରେ ଲାଗିରହିଥିବା ଦୋଷକୁ ଧୋଇଦେବା, ଏବଂ ଆଉ କେବେବି ଏପରି ଦୋଷ କରିବି ନାହିଁ ଏପରି ସ୍ଥିର କରିବା । ଅର୍ଥାତ ପ୍ରତ୍ୟାଖ୍ୟାନ ହୋଇଗଲା ।

ଯେତେବେଳେ ତୁମେ ପ୍ରତିକ୍ରମଣ କରିବା ପାଇଁ ବସୁଛ, ସେତେବେଳେ

ଅମୃତ ବିନ୍ଦୁ ବର୍ଷା ହେବାକୁ ଲାଗେ ଗୋଟେ ପଟେ, ଏବଂ ହାଲୁକା ହେଲି, ଏପରି ଅନୁଭବ ହୁଏ । ଭାଇ, ତୋ ଦ୍ୱାରା ପ୍ରତିକ୍ରମଣ ହେଉଛି କି ? ସେତେବେଳେ ହାଲୁକା ହେବାପରି ଲାଗେ ? କ'ଣ ତୁମର ପ୍ରତିକ୍ରମଣ କରିବା ଆରମ୍ଭ ହୋଇଗଲାଣି ? ପୁରା ଜୋରରେ ଚାଲିଛି ? ସବୁ ଦୋଷକୁ ଖୋଜି-ଖୋଜି ପ୍ରତିକ୍ରମଣ କରିନେବାର ଅଛି । ଖୋଜିବାକୁ ଲାଗିବ ତେବେ ସବୁ ମନେ ପଡ଼ିଚାଲିବ । ଆଠ ବର୍ଷ ପୂର୍ବେ କାହାକୁ ଗୋଇଠା ମାରିଥିବ, ତାହା ମଧ୍ୟ ଦିଶିବ । ରାସ୍ତା ଦିଶିବ, ଗୋଇଠା ବି ଦିଶିବ । ଏସବୁ କେମିତି ମନେ ପଡ଼ିଲା ? ଖାଲି ଏମିତି ମନେ ପକାଇବାକୁ ଯିବା ତେବେ କିଛି ମନେ ପଡ଼େ ନାହିଁ ଏବଂ ପ୍ରତିକ୍ରମଣ କରିବାକୁ ଲାଗିଲେ ତେବେ ତୁରନ୍ତ ଲିଙ୍କ୍‌ରେ (କ୍ରମାନୁସାରେ) ମନେ ପଡ଼ିଯାଏ । ଥରେ-ଅଧେ କେବେ ପୁରା ଜୀବନର କରିଥିଲ ତୁମେ ?

**ପ୍ରଶ୍ନକର୍ତ୍ତା :** କରିଥିଲି ।

**ଦାଦାଶ୍ରୀ :** ଏବେ ତ ଯେବେ ମୂଳ ଭୁଲ ବୁଝା ପଡ଼ିବ, ସେତେବେଳେ ବହୁତ ଆନନ୍ଦ ହେବ । ପ୍ରତିକ୍ରମଣରୁ ଯଦି ଆନନ୍ଦ ନ ହୁଏ ତେବେ ଏହାର ଅର୍ଥ ପ୍ରତିକ୍ରମଣ କରିବା ଆସିଲା ନାହିଁ । ଅତିକ୍ରମଣରୁ ଯଦି ଦୁଃଖ ନହୁଏ ତେବେ ସେ ମଣିଷ, ମଣିଷ ନୁହେଁ ।

**ପ୍ରଶ୍ନକର୍ତ୍ତା :** କେଉଁ ମୂଳ ଭୁଲ ଦାଦା ?

**ଦାଦାଶ୍ରୀ :** ଆଗରୁ ତ ଭୁଲ ହିଁ ଦେଖାଯାଉ ନଥିଲା ନା ? ଏବେ ଦେଖାଯାଉଛି, ତାହା ସ୍ଥୂଳ ଦେଖା ଯାଉଛି । ଏବେ ତ ଆଗର ଦେଖାଯିବ ।

**ପ୍ରଶ୍ନକର୍ତ୍ତା :** ସୂକ୍ଷ୍ମ, ସୂକ୍ଷ୍ମତର...

**ଦାଦାଶ୍ରୀ :** ଭୁଲ ଦିଶିବାକୁ ଲାଗିବ ।

ଯେତେବେଳେ ତୁମେ ସାରା ଜୀବନର ପ୍ରତିକ୍ରମଣ କର, ସେତେବେଳେ ତୁମେ ନା ତ ମୋକ୍ଷରେ ଥାଅ ଆଉ ନା ହିଁ ସଂସାରରେ । ଏମିତିରେ ତ ତୁମେ ପ୍ରତିକ୍ରମଣ ସମୟରେ ବିଗତ ଦୋଷର ପୁରା ବିବରଣ କରୁଛ । ମନ-ବୁଦ୍ଧି-ଚିତ୍ତ ଏବଂ ଅହଂକାର ସମସ୍ତଙ୍କ ଫୋନ-ବୋନ ବନ୍ଦ ଥାଏ । ଅନ୍ତଃକରଣ ବନ୍ଦ ଥାଏ । ସେହି ସମୟରେ କେବଳ ପ୍ରଜ୍ଞା ହିଁ କାମ କରେ । ଆତ୍ମା ବି ଏଥିରେ କିଛି କରେ ନାହିଁ । ଦୋଷ ହେଲା ତେବେ ଢାଙ୍କି ହୋଇଯାଏ । ପୁଣି ଦ୍ୱିତୀୟ ଲେୟର(ପରସ୍ତ) ଆସେ । ଏହିପରି ଲେୟର ଉପରେ ଲେୟର ଆସି ଚାଲିଥାଏ, ପରେ ମୃତ୍ୟୁ ସମୟରେ ଶେଷ

ଏକଘଣ୍ଟାରେ ଏସବୁର ଫାଇନାଲ ଚିଠା ଆସେ ।

ଅତୀତର ସମସ୍ତ ଦୋଷ ବର୍ତ୍ତମାନରେ ଦେଖାଯିବା, ତାହା 'ଜ୍ଞାନପ୍ରକାଶ' ଅଟେ । ତାହା ମେମୋରି (ସ୍ମୃତି) ନୁହେଁ ।

**ପ୍ରଶ୍ନକର୍ତ୍ତା :** ପ୍ରତିକ୍ରମଣ ଦ୍ୱାରା ଆତ୍ମା ଉପରେ ଇଫେକ୍ଟ ହୁଏ କି ?

**ଦାଦାଶ୍ରୀ :** ଆତ୍ମାକୁ ତ କୌଣସି ବି ଇଫେକ୍ଟ ସ୍ପର୍ଶ କରେ ହିଁ ନାହିଁ । ଯଦି ଇଫେକ୍ଟ ହୁଏ ତେବେ ସଞ୍ଚୀ କୁହାଯିବ । ଆତ୍ମା ଅଛି, ଏହା ହଣ୍ଡ୍ରେଡ଼ ପରସେଣ୍ଟ ଡିସାଇଡେଡ଼ ଅଟେ । ଯେଉଁଠି ମେମୋରୀ ପହଞ୍ଚେ ନାହିଁ, ସେଠି ଆତ୍ମାର ପ୍ରଭାବରୁ ହୁଏ । ଆତ୍ମା ଅନନ୍ତ ଶକ୍ତିବାଲା ଅଟେ, ତା'ର ପ୍ରଜ୍ଞାଶକ୍ତି ପାତାଳ ଚିରି ଦେଖାଏ । ଏହି ପ୍ରତିକ୍ରମଣ ଦ୍ୱାରା ତ ନିଜକୁ ଜଣାପଡ଼େ ଯେ ଏବେ ହାଲୁକା ହୋଇଗଲା ଏବଂ ବୈର ଚାଲିଯାଏ, ନିୟମରୁ ହିଁ ଚାଲିଯାଏ । ଆଉ ପ୍ରତିକ୍ରମଣ କରିବା ପାଇଁ ସେ ବ୍ୟକ୍ତି ଯଦି ସାମ୍ନାରେ ନ ମିଳେ ତେବେ ମଧ୍ୟ ଅସୁବିଧା ନାହିଁ । ଏଥିରେ ସାମ୍ନାସାମ୍ନି ଦସ୍ତଖତର ଆବଶ୍ୟକତା ନାହିଁ । ଯେପରି ଏହି କୋର୍ଟରେ ସାମ୍ନାସାମ୍ନି ଦସ୍ତଖତ ଦରକାର, ସେପରି ଦରକାର ନାହିଁ କାହିଁକିନା ଏ ଦୋଷ ସାମ୍ନାସାମ୍ନି ହୋଇନାହିଁ । ଏହି ଦୋଷ ତ ଲୋକଙ୍କ ଅନୁପସ୍ଥିତିରେ ହୋଇଛି । ଏମିତିରେ ଦେଖିବାକୁ ଗଲେ ଲୋକଙ୍କ ସାମ୍ନାରେ ହୋଇଛି, କିନ୍ତୁ ଦସ୍ତଖତ ସାମ୍ନାସାମ୍ନି କରି ନାହାନ୍ତି । ଦସ୍ତଖତ ଭିତରର ଅଟେ, ରାଗ୍-ଦ୍ୱେଷର ଦସ୍ତଖତ ଅଟେ ।

କେବେ ଏକୁଟିଆ ବସିଥିବ ଏବଂ ପ୍ରତିକ୍ରମଣ ଅଥବା ଏପରି କିଛି କରୁ, କରୁ, କରୁ ଭିତରେ ଆତ୍ମାର ଅଳ୍ପ ଅନୁଭବ ହୋଇଯାଏ । ତାହାର ସ୍ୱାଦ ଆସିଯାଏ । ତାହା ଅନୁଭବ କୁହାଯାଏ ।

ଯେବେ ଘରଲୋକ ନିର୍ଦ୍ଦୋଷ ଦେଖାଯିବେ ତେବେ ବୁଝିବ ଯେ ତୁମ ପ୍ରତିକ୍ରମଣ ପ୍ରକୃତ ଅଟେ । ବାସ୍ତବରେ ନିର୍ଦ୍ଦୋଷ ହିଁ ଅଟନ୍ତି, ପୁରା ଜଗତ ନିର୍ଦ୍ଦୋଷ ହିଁ ଅଟେ । ତୁମେ ତୁମ ଦୋଷରୁ ହିଁ ବନ୍ଧା ହୋଇଛ, ସେମାନଙ୍କ ଦୋଷରୁ ନୁହେଁ । ତୁମ ନିଜ ଦୋଷରୁ ହିଁ ବନ୍ଧା ହୋଇଛ । ଏବେ ଏପରି ଯେତେବେଳେ ବୁଝା ପଡ଼ିବ ସେତେବେଳେ କିଛି ସମାଧାନ ଆସିବ !

**ପ୍ରଶ୍ନକର୍ତ୍ତା :** *ନିଶ୍ଚୟରେ ତ ବିଶ୍ୱାସ ଅଛି ଯେ ପୁରା ଜଗତ ନିର୍ଦ୍ଦୋଷ ଅଟେ ।*

**ଦାଦାଶ୍ରୀ :** ତାହା ତ ପ୍ରତୀତିରେ ଆସିଲା କୁହାଯିବ । ଅନୁଭବରେ କେତେ ଆସିଲା ? ଏ ଜିନିଷ ଏତେ ସହଜ ନୁହେଁ । ତାହା ତ ଯେତେବେଳେ ଓଡ଼ଶ ଘେରିନେବେ,

ମଶା ଘେରିନେବେ, ସାପ ଘେରିନେବେ, ସେତେବେଳେ ଯଦି ନିର୍ଦ୍ଦୋଷ ଲାଗେ, ତେବେ ଠିକ । କିନ୍ତୁ ପ୍ରତୀତିରେ ଆମକୁ ରହିବା ଉଚିତ ଯେ ନିର୍ଦ୍ଦୋଷ ଅଟେ । ଆମକୁ ଦୋଷୀ ଦେଖା ଯାଉଛନ୍ତି ତାହା ଆମର ଭୁଲ । ତାହାର ପ୍ରତିକ୍ରମଣ କରିବା ଉଚିତ । ମୋର ତ ପ୍ରତୀତିରେ ବି ନିର୍ଦ୍ଦୋଷ ଅଟେ ଏବଂ ବର୍ତ୍ତନ (ଆଚରଣ, ବ୍ୟବହାର)ରେ ବି ନର୍ଦ୍ଦୋଷ ଅଟେ । ତୋତେ ତ ଏବେ ପ୍ରତୀତିରେ ବି ଆସିନାହିଁ ଯେ ନିର୍ଦ୍ଦୋଷ ଅଟେ, ତୋତେ ଏବେ ଦୋଷୀ ଲାଗୁଛନ୍ତି । କେହି କିଛି କରେ, ତେବେ ପରେ ତା'ର ପ୍ରତିକ୍ରମଣ କରୁଛୁ ଅର୍ଥାତ ଆରମ୍ଭରେ ତ ଦୋଷୀ ଲାଗୁଛନ୍ତି ।

**ପ୍ରଶ୍ନକର୍ତ୍ତା :** ଶୁଦ୍ଧ ଉପଯୋଗ ରହିବା ସମୟରେ ଅତିକ୍ରମଣ ହୁଏ ?

**ଦାଦାଶ୍ରୀ :** ହୁଏ । ଅତିକ୍ରମଣ ବି ହୁଏ ଏବଂ ପ୍ରତିକ୍ରମଣ ବି ହୁଏ ।

ଆମକୁ ଏପରି ଲାଗିବ ଯେ ଏହା ତ ମୁଁ ଉପଯୋଗ ଭୁଲି ଓଲଟା ରାସ୍ତାରେ ଚାଲିଲି । ସେ ଉପଯୋଗ ଭୁଲିଲେ, ତାହା ପାଇଁ ପ୍ରତିକ୍ରମଣ କରିବାକୁ ପଡ଼ିବ । ଓଲଟା ରାସ୍ତା ଅର୍ଥାତ୍ ୱେଷ୍ଟ ଅଫ୍ ଟାଇମ୍ ଏଣ୍ଡ୍ ଏନର୍ଜି । ତଥାପି ତାହାର ପ୍ରତିକ୍ରମଣ ନକରିବ ତେବେ ଚଳିବ । ସେଥିରେ ଏତେ ଅଧିକ କ୍ଷତି ନାହିଁ । ଏକ ଜନ୍ମ ଏବେ ବାକି ଅଛି, ସେଥିପାଇଁ ଲେଟ୍ ଗୋ କରିଛି କିନ୍ତୁ ଯାହାକୁ ଉପଯୋଗରେ ଅଧିକ ରହିବାର ଥିବ ତା'କୁ ଉପଯୋଗ ଭୁଲିଲେ ତାହାର ପ୍ରତିକ୍ରମଣ କରିବାକୁ ହେବ । ପ୍ରତିକ୍ରମଣ ଅର୍ଥାତ ପଛକୁ ଫେରିବା ! କେବେ ପଛକୁ ଫେରି ହିଁ ନାହାନ୍ତି ନା !

କୌଣସି ଜାଗାରେ ମୁଁ ବିଧି ରଖେ ନାହିଁ । ଔରଙ୍ଗବାଦରେ ମୁଁ ଏପରି ବିଧି ରଖେ ଯେ ଅନନ୍ତ ଜନ୍ମର ଦୋଷ ଧୋଇଯାଏ । ଏକ ଘଣ୍ଟାର ପ୍ରତିକ୍ରମଣ ବିଧିରେ ତ ସମସ୍ତ ପ୍ରକାରର ଅହଂକାର ଭସ୍ମୀଭୂତ ହୋଇଯାଏ ! ମୁଁ ସେଠି ଔରଙ୍ଗାବାଦରେ ତ ବାରମାସରେ ଥରେ ପ୍ରତିକ୍ରମଣ କରାଉଥିଲି । ସେତେବେଳେ ଦୁଇଶହ-ତିନିଶହ ଲୋକ କେବଳ କାନ୍ଦିଚାଲନ୍ତି ଏବଂ ସବୁ ରୋଗ ବାହାରି ଯାଏ । କାରଣ ପତି ତା' ପତ୍ନୀର ଗୋଡ଼ ଧରି ସେଠାରେ କ୍ଷମା ମାଗେ । କେତେ ଜନ୍ମର ବନ୍ଧନ !, ସେଥିପାଇଁ କ୍ଷମା ମାଗନ୍ତି, ସେତେବେଳେ ବହୁତ କିଛି ସଫା ହୋଇଯାଏ ।

ସେଠି ପ୍ରତିବର୍ଷ, ଏହା ପଛରେ ମୋତେ ବହୁତ ବଡ଼ ବିଧି କରିବାକୁ ପଡ଼େ, ସମସ୍ତଙ୍କ ମନ ଶୁଦ୍ଧ କରିବା ପାଇଁ, ଆତ୍ମା (ବ୍ୟବହାର ଆତ୍ମା) ଶୁଦ୍ଧ କରିବା ପାଇଁ, ବଡ଼ ବିଧି କରି, ପୁଣି ରଖି ଦିଏ ଯେ ସମସ୍ତଙ୍କର ସଫା ହୋଇଯାଏ ସେହି ସମୟରେ । କମ୍ପ୍ଲିଟ କ୍ଲିୟର, ନିଜକୁ ଧ୍ୟାନ ବି ରହେ ନାହିଁ ଯେ ମୁଁ କ'ଣ ଲେଖୁଛି, କିନ୍ତୁ ସବୁ ସ୍ୱଷ୍ଟ

ଲେଖି ଆଣନ୍ତି । ପୁଣି କ୍ଲିୟର ହୋଇଯାଏ । ଅଭେଦ ଭାବ ଉତ୍ପନ୍ନ ହେଲା ନା, ଗୋଟିଏ ମିନିଟ୍ ପାଇଁ ବି ଯଦି ମୋତେ ସମର୍ପି ଦେଲା ଯେ 'ମୁଁ ଏହିପରି ଅଟେ ସାହେବ', ତାହା ଅଭେଦଭାବ ହୋଇଗଲା । ଏବଂ ତା'ର ଶକ୍ତି ବଢ଼ିଗଲା ।

ଏବଂ ପୁଣି ମୁଁ ତୋ ଦୋଷ ଜାଣିନିଏ ଏବଂ ଦୋଷ ଉପରେ ବିଧି ରଖିଚାଲେ । ଏହା କଳିଯୁଗ ଅଟେ, କଳିଯୁଗରେ କି ଦୋଷ ନ ହୁଏ ? କାହାର ଦୋଷ କାଢ଼ିବା ତାହା ହିଁ ଭୁଲ । କଳିଯୁଗରେ ଅନ୍ୟର ଦୋଷ କାଢ଼ିବା ତାହା ହିଁ ନିଜର ଭୁଲ । କାହାର ଦୋଷ କାଢ଼ିବାର ନାହିଁ । କି ଗୁଣ ଅଛି, ତାହା ଦେଖିବାର ଆବଶ୍ୟକତା ଅଛି । କ'ଣ ବଞ୍ଚିଛି ତା' ପାଖରେ ? ପୁଞ୍ଜି କ'ଣ ବଞ୍ଚିଛି ତାହା ଦେଖିବାର ଆବଶ୍ୟକତା ଅଛି । ଏହି କାଳରେ ପୁଞ୍ଜି ହିଁ ବଞ୍ଚେ ନାହିଁ ନା ! ଯାହା ପାଖରେ ପୁଞ୍ଜି ବଞ୍ଚିଛି, ସେହି ମହାତ୍ମା ଆଗରେ ଅଛନ୍ତି ନା !

ଯିଏ ଆମ ସାଥୀରେ ଥିବେ, ପୂର୍ବରୁ ବି ଥିଲେ ଏବଂ ଆଜି ବି ଅଛନ୍ତି, ସେମାନେ ଆମର ଧର୍ମବନ୍ଧୁ କୁହାଯାନ୍ତି ଏବଂ ନିଜ ଧର୍ମବନ୍ଧୁଙ୍କ ସାଥିରେ ହିଁ ଜନ୍ମୋଜନ୍ମର ବୈର ବନ୍ଧା ହୋଇଥାଏ । ତାଙ୍କ ସହିତ ଯଦି କିଛି ବୈର ବାନ୍ଧି ହୋଇଯାଇଥିବ, ସେଥିପାଇଁ ପ୍ରତ୍ୟକ୍ଷ ପ୍ରତିକ୍ରମଣ କରିନେବ ତେବେ ହିସାବ ସଫା ହୋଇଯିବ । ଜଣେ ବି ବ୍ୟକ୍ତିର ପ୍ରତ୍ୟକ୍ଷ ପ୍ରତିକ୍ରମଣ କରିବା ଭୁଲିବ ନାହିଁ । ଅଧିକତର ସହାଧ୍ୟାୟୀଙ୍କ ସହ ହିଁ ବୈର ବାନ୍ଧି ହୋଇଥାଏ ଏବଂ ତାଙ୍କର ପ୍ରତ୍ୟକ୍ଷ ପ୍ରତିକ୍ରମଣ କରିବା ଦ୍ୱାରା ଧୋଇହୋଇଯିବ । ଔରଙ୍ଗାବାଦରେ ଯେଉଁ ପ୍ରତିକ୍ରମଣ କରାଏ, ଏଭଳି ପ୍ରତିକ୍ରମଣ ତ ୱର୍ଲ୍ଡରେ କେଉଁଠି ବି ହେଉନଥିବ ।

**ପ୍ରଶ୍ନକର୍ତ୍ତା :** ସେଠି ସମସ୍ତେ କାନ୍ଦୁଥିଲେ ନା ! ବଡ଼ ବଡ଼ ସେଠ୍ ବି କାନ୍ଦୁଥିଲେ ।

**ଦାଦାଶ୍ରୀ :** ହଁ, ଔରଙ୍ଗାବାଦର ଦେଖ ନା, ସବୁ କେତେ କାନ୍ଦୁଥିଲେ ! ଏବେ ଏପରି ପ୍ରତିକ୍ରମଣ ପୁରା ଜୀବନରେ ଥରେ କରିଥିବ ତେବେ ବହୁତ ହୋଇଗଲା ।

**ପ୍ରଶ୍ନକର୍ତ୍ତା :** ବଡ଼ ଲୋକଙ୍କୁ କାନ୍ଦିବାର ଜାଗା ହିଁ କାହିଁ ? ଏପରି ଜାଗା ବହୁତ କମ ଥାଏ ।

**ଦାଦାଶ୍ରୀ :** ହଁ, ସତକଥା । ଏଠି ତ ବହୁତ କାନ୍ଦିଥିଲେ ସମସ୍ତେ ।

**ପ୍ରଶ୍ନକର୍ତ୍ତା :** ମୁଁ ତ ପ୍ରଥମ ଥର ଏପରି ଦେଖିଲି ଯେ ସମାଜରେ ଏପରି ସବୁ ପ୍ରତିଷ୍ଠିତ କୁହାଯାଉଥିବା ଲୋକ ସମସ୍ତଙ୍କ ସାମ୍ନାରେ ସେଠି କାନ୍ଦୁଥିଲେ !!!

**ଦାଦାଶ୍ରୀ :** ସମସ୍ତଙ୍କ ସାମ୍ନାରେ କାନ୍ଦୁଥିଲେ ଏବଂ ନିଜ ପତ୍ନୀର ଗୋଡ଼ ଧରି କ୍ଷମା ମାଗୁଥିଲେ । ଔରଙ୍ଗାବାଦରେ ତୁମେ ଆସିଥିବ, ସେଠି ଏପରି ଦେଖିନଥିଲ ?

**ପ୍ରଶ୍ନକର୍ତ୍ତା :** ଅନ୍ୟ କେଉଁଠି ବି ଦେଖିନାହିଁ ସେପରି ଦୃଶ୍ୟ !

**ଦାଦାଶ୍ରୀ :** ହୋଇପାରିବ ହିଁ ନାହିଁ ନା ! ଆଉ ଏପରି ଅକ୍ରମ ବିଜ୍ଞାନ ହୋଇପାରିବ ନାହିଁ, ଏପରି ପ୍ରତିକ୍ରମଣ ହୋଇପାରିବ ନାହିଁ, ଏପରି କିଛି ବି ହୋଇପାରିବ ନାହିଁ ।

**ପ୍ରଶ୍ନକର୍ତ୍ତା :** ଏପରି 'ଦାଦାଜୀ' ବି ହୋଇପାରିବେ ନାହିଁ !

**ଦାଦାଶ୍ରୀ :** ହଁ । ଏପରି 'ଦାଦାଜୀ' ବି ହୋଇପାରିବେ ନାହିଁ ।

ପ୍ରକୃତ ଆଲୋଚନା କରି ହିଁ ନାହାନ୍ତି କେହି । ତାହା ହିଁ ମୋକ୍ଷରେ ଯିବାର ବାଧକ ଅଟେ । ଦୋଷ ହୋଇଗଲା, ସେଥିରେ ଅସୁବିଧା ନାହିଁ । ଯଦି ପ୍ରକୃତ ଆଲୋଚନା ହୁଏ ତେବେ କୌଣସି ଅସୁବିଧା ନାହିଁ । ଏବଂ ଆଲୋଚନା ଗଜବ ପୁରୁଷଙ୍କ ପାଖରେ କରିବା ଉଚିତ । ଜୀବନରେ କେଉଁଠି ନିଜ ଦୋଷର ଆଲୋଚନା କରିଛ ? କାହା ପାଖରେ ଆଲୋଚନା କରିବ ? ଏବଂ ଆଲୋଚନା କରିବା ବିନା ଚାରା ନାହିଁ । ଯେପର୍ଯ୍ୟନ୍ତ ଆଲୋଚନା ନ କରିବ ତେବେ ଏହାକୁ କ୍ଷମା କିଏ କରାଇବ ? ଜ୍ଞାନୀପୁରୁଷ ଯାହା ଇଚ୍ଛା ତାହା କରି ପାରିବେ କାରଣ ସେ କର୍ତ୍ତା ନୁହଁନ୍ତି, ସେଥିପାଇଁ । ଯଦି କର୍ତ୍ତା ହୋଇଥାନ୍ତେ ତେବେ ତାଙ୍କୁ ମଧ୍ୟ କର୍ମବନ୍ଧନ ହୋଇଥାନ୍ତା । କିନ୍ତୁ କର୍ତ୍ତା ନୁହଁନ୍ତି, ସେଥିପାଇଁ ଯାହା ଇଚ୍ଛା ତାହା କରିପାରନ୍ତି ।

ଆମକୁ ସେଠି ଗୁରୁଙ୍କ ପାଖରେ ଆଲୋଚନା କରିବା ଉଚିତ । କିନ୍ତୁ ଅନ୍ତିମ ଗୁରୁ ହେଉଛନ୍ତି ଏ 'ଦାଦା ଭଗବାନ' । ମୁଁ ତ ତୁମକୁ ରାସ୍ତା ବତାଇ ଦେଲି । ଅନ୍ତିମ ଗୁରୁ ବତାଇ ଦେଲି । ସେ ତୁମକୁ ଉତ୍ତର ଦେଇ ଚାଲିବେ ଏବଂ ସେଥିପାଇଁ ତ ସେ 'ଦାଦା ଭଗବାନ' ଅଟନ୍ତି । ଯେପର୍ଯ୍ୟନ୍ତ ସେ ପ୍ରତ୍ୟକ୍ଷ ନ ହୁଅନ୍ତି, ସେପର୍ଯ୍ୟନ୍ତ 'ଏହି' ଦାଦା ଭଗବାନଙ୍କୁ ଭଜିବାକୁ ହେବ । ସେ ପ୍ରତ୍ୟକ୍ଷ ମିଳିଯିବା ପରେ ଆପେ ଆପେ ଧୀରେ ଧୀରେ ପୁଣି ସେ ମେସିନ୍ ଚାଲିବା ଆରମ୍ଭ ହୋଇଯିବ । ଏଣୁ ପରେ ସେ ନିଜେ 'ଦାଦା ଭଗବାନ' ହୋଇଯିବ ।

ଜ୍ଞାନୀପୁରୁଷଙ୍କ ପାଖରେ ଦୋଷ ଢାଙ୍କିବ ତେବେ ଖତମ ହୋଇଗଲା । ଲୋକ ଖୋଲା କରିବା ପାଇଁ ହିଁ ତ ପ୍ରତିକ୍ରମଣ କରନ୍ତି । ସେ ଭାଇ ସବୁ ନେଇ ଆସିଥିଲେ ନା ? ଓଲଟା ସେ ଖୋଲା କରିଦେଲା ଜ୍ଞାନୀଙ୍କ ପାଖରେ ! ସେଠି କେହି

ଢାଙ୍କିବ ତେବେ କ'ଣ ହେବ ? ! ! ଦୋଷ ଢାଙ୍କିଲେ ତାହା ଡବଲ ହୋଇଯାଏ ।

ସ୍ତ୍ରୀ ସହିତ ଯେତିକି ଚିହ୍ନା-ପରିଚ ଅଛି, ସେତିକି ଚିହ୍ନା-ପରିଚ ପ୍ରତିକ୍ରମଣ ସହିତ ହେବା ଉଚିତ । ଯେମିତି ସ୍ତ୍ରୀକୁ ଭୁଲିହୁଏ ନାହିଁ, ସେହିପରି ପ୍ରତିକ୍ରମଣ ବି ନ ଭୁଲିବା ଉଚିତ । ଦିନସାରା କ୍ଷମା ମାଗୁଥିବା ଉଚିତ । କ୍ଷମା ମାଗିବାର ଅଭ୍ୟାସ ହିଁ ପଡ଼ିଯିବା ଉଚିତ । ଏହା ତ, ଅନ୍ୟର ଦୋଷ ଦେଖିବାର ଦୃଷ୍ଟି ହୋଇଯାଇଛି !

ଯାହା ସହିତ ବିଶେଷ ରୂପରେ ଅତିକ୍ରମଣ ହୋଇଯାଇଥିବ, ତା' ସହିତ ପ୍ରତିକ୍ରମଣର ଯଜ୍ଞ ଆରମ୍ଭ କରିଦେବ । ଅତିକ୍ରମଣ ବହୁତ କରିଛେ । ପ୍ରତିକ୍ରମଣ କରିନେ, ସେହି କାରଣରୁ ଏସବୁ ଅଛି ।

ଏହି ପ୍ରତିକ୍ରମଣ ତ ମୋର ସୂକ୍ଷ୍ମାତିସୂକ୍ଷ୍ମ ଅନୁସନ୍ଧାନ ଅଟେ । କେହି ଯଦି ଏହି ଅନୁସନ୍ଧାନକୁ ବୁଝିନିଏ ତେବେ କାହା ସହିତ କୌଣସି ଝଗଡ଼ା ହିଁ ରହିବ ନାହିଁ ।

**ପ୍ରଶ୍ନକର୍ତ୍ତା :** ଦୋଷର ଲିଷ୍ଟ୍ ତ ବହୁତ ଲମ୍ବା ଅଛି ।

**ଦାଦାଶ୍ରୀ :** ତାହା ଲମ୍ବା ଥିବ ତେବେ, ଏପରି ଧରିନିଅ ଯେ ଜଣେ ବ୍ୟକ୍ତି ସହିତ ଶହେ ପ୍ରକାରର ଦୋଷ ହୋଇଯାଇଥିବ ତେବେ ସେ ସବୁର ଏକ ସଙ୍ଗରେ ପ୍ରତିକ୍ରମଣ କରିଦେବ ଯେ ଏହିସବୁ ଦୋଷ ପାଇଁ ମୁଁ ଆପଣଙ୍କଠାରେ କ୍ଷମା ମାଗୁଛି !

**ପ୍ରଶ୍ନକର୍ତ୍ତା :** ଏବେ ଏହି ଜୀବନର ଡ୍ରାମା ଜଲଦୀ ପୁରା ହୋଇଯିବ ତେବେ ଭଲ !

**ଦାଦାଶ୍ରୀ :** ଏପରି କାହିଁକି କହିଲ ?

**ପ୍ରଶ୍ନକର୍ତ୍ତା :** ଆପଣ କୋଡ଼ିଏ ଦିନ ଏଠି ଥିଲେ, କିନ୍ତୁ ଗୋଟିଏ ବି ଜାଗା ଆସିପାରିଲି ନାହିଁ ।

**ଦାଦାଶ୍ରୀ :** ଏଥିପାଇଁ କ'ଣ ଦେହ ଖତମ କରିଦେବା ଉଚିତ ?

ଏହି ଦେହରେ 'ଦାଦା ଭଗବାନ'ଙ୍କୁ ଚିହ୍ନିଲ । ଏହି ଦେହର ତ ଏତେ ଉପକାର ଯେ ଯେଭଳି ବି ଚିକିତ୍ସା କରିବାକୁ ପଡୁ ତେବେ କରିବ । ଏହି ଦେହରେ ତ 'ଦାଦା ଭଗବାନ'ଙ୍କୁ ଚିହ୍ନିଲ । ଅନନ୍ତ ଦେହ ନଷ୍ଟ କରିଦେଲ ପୁରାପୁରି, ବ୍ୟର୍ଥ ଗଲା । ଏହି ଦେହରେ ଚିହ୍ନିଲ, ଏଣୁ ଏହି ଦେହ ମିତ୍ର ସମାନ ହୋଇଗଲା । ଆଉ ଇଏ ସେକେଣ୍ଡ ମିତ୍ର, ବୁଝିଗଲ ନା ? ଏବେ ଏହି ଦେହର ଯତ୍ନ କରିବ । ଆଜି ପ୍ରତିକ୍ରମଣ କରିବ, 'ଦେହ ଜଲଦୀ ଖତମ ହେଇଯାଉ ଏପରି କହିଲି, ସେଥିପାଇଁ କ୍ଷମା ମାଗୁଛି ।'

## ୨୫. ପ୍ରତିକ୍ରମଣର ସିଦ୍ଧାନ୍ତିକ ସମଝ

**ପ୍ରଶ୍ନକର୍ତ୍ତା :** ତନ୍ମୟାକାର ହୋଇ ଯାଉଛି ସେଥିପାଇଁ ଜାଗୃତି ପୂର୍ବକ ପୁରା ପୁରି *ନିକାଲ* ହେଉନାହିଁ । ତନ୍ମୟାକାର ହୋଇଯିବା ପରେ ଜଣା ପଡୁଛି, ତେବେ ପୁଣି ତାହାର ପ୍ରତିକ୍ରମଣ କରି *ନିକାଲ* କରିବାର କିଛି ରାସ୍ତା ଅଛି କି ?

**ଦାଦାଶ୍ରୀ :** ପ୍ରତିକ୍ରମଣ କରିବାଦ୍ୱାରା ହାଲୁକା ହୋଇଯାଏ । ଆସନ୍ତା ଥର ହାଲୁକା ହୋଇ ଆସେ ଆଉ ଯଦି ପ୍ରତିକ୍ରମଣ ନକରିବା ତେବେ ସେହିକୁ ସେହି ବୋଝ ପୁଣି ଥରେ ଆସିବ । ପରେ ପୁଣି ଛିଟିକି ଯିବ ଚାର୍ଜ ହେବା ବିନା । ଏଣୁ ପ୍ରତିକ୍ରମଣ ଦ୍ୱାରା ତାହା ହାଲୁକା ହୋଇ ହୋଇ *ନିକାଲ* ହୋଇଚାଲିବ ।

**ପ୍ରଶ୍ନକର୍ତ୍ତା :** ଆପଣ କହନ୍ତି ଯେ ଅତିକ୍ରମଣ ନ୍ୟୁଟ୍ରଲ ହିଁ ଅଟେ, ତେବେ ପୁଣି ପ୍ରତିକ୍ରମଣ କରିବାର ରହିଲା ହିଁ କେଉଁଠି ?

**ଦାଦାଶ୍ରୀ :** ଅତିକ୍ରମଣ ନ୍ୟୁଟ୍ରଲ ହିଁ ଅଟେ । କିନ୍ତୁ ସେଥିରେ ତନ୍ମୟାକାର ହୋଇଯାଏ, ସେଥିପାଇଁ ବୀଜ ପଡ଼ିଯାଏ । କିନ୍ତୁ ଯଦି ଅତିକ୍ରମଣରେ ତନ୍ମୟାକାର ନ ହେବ ତେବେ ବୀଜ ପଡ଼ିବ ନାହିଁ । ଅତିକ୍ରମଣ କିଛି କରିପାରିବ ନାହିଁ । ଆଉ ପ୍ରତିକ୍ରମଣ ତ ଆମେ ତନ୍ମୟାକାର ନ ହେବା, ତେବେ ମଧ୍ୟ କରିବ । ଚନ୍ଦୁଭାଇ ତନ୍ମୟାକାର ହୋଇଗଲେ ତାହା ବି ତୁମେ ଜାଣ ଏବଂ ହେଲେ ନାହିଁ ତାହା ବି ତୁମେ ଜାଣ । ତୁମେ ତନ୍ମୟାକାର ହୁଅ ହିଁ ନାହିଁ । ତନ୍ମୟାକାର ମନ-ବୁଦ୍ଧି-ଚିତ୍ତ ଏବଂ ଅହଂକାର ହୁଅନ୍ତି, ତୁମେ ସେମାନଙ୍କୁ ଜାଣ ।

**ପ୍ରଶ୍ନକର୍ତ୍ତା :** ଚନ୍ଦୁଭାଇ ଯଦି ତନ୍ମୟାକାର ହୋଇଯାଏ, ତେବେ ଚନ୍ଦୁଭାଇକୁ ପ୍ରତିକ୍ରମଣ କରିବା ପାଇଁ କହିବାକୁ ପଡ଼ିବ ନା ?

**ଦାଦାଶ୍ରୀ :** ହଁ, ଚନ୍ଦୁଭାଇକୁ କହିବାର ଅଛି ।

**ପ୍ରଶ୍ନକର୍ତ୍ତା :** ସ୍ୱପ୍ନରେ ପ୍ରତିକ୍ରମଣ ହୋଇପାରିବ ?

**ଦାଦାଶ୍ରୀ :** ହଁ, ବହୁତ ଭଲ ଭାବରେ ହୋଇ ପାରିବ । ସ୍ୱପ୍ନରେ ଯେଉଁ ପ୍ରତିକ୍ରମଣ ହୁଏ, ତାହା ତ ଏବେ ଯେଉଁ ହେଉଛି, ତାହାଠୁ ଭଲ ହୁଏ । ଏବେ ତ ଆମେ ଜଲଦୀରେ କରି ନେଉଛେ, ସ୍ୱପ୍ନରେ ଯେଉଁ କାମ ହୁଏ, ତାହା ସବୁ ପଦ୍ଧତିପୂର୍ବକ ହୁଏ । ସ୍ୱପ୍ନରେ ଯେଉଁ 'ଦାଦା' ଦେଖାଯାନ୍ତି, ସେଭଳି 'ଦାଦା' ତ ଆମେ କେବେ ଦେଖି ହିଁ ନଥିବା, ଏଭଳି 'ଦାଦା' ଦେଖାଯାନ୍ତି । ଜାଗୃତିରେ ସେଭଳି ଦାଦା ଦେଖାଯାନ୍ତି ନାହିଁ, ସ୍ୱପ୍ନରେ ବହୁତ ଭଲ ଦେଖାଯାନ୍ତି । କାରଣ ସ୍ୱପ୍ନ, ତାହା ସହଜ ଅବସ୍ଥା ଅଟେ

ଆଉ ଏହି ଜାଗୃତ, ତାହା ଅସହଜ ଅବସ୍ଥା ଅଟେ ।

କ୍ରମିକ ମାର୍ଗରେ ଆତ୍ମପ୍ରାପ୍ତି ପରେ ପ୍ରତିକ୍ରମଣ କରାଯାଏ ନାହିଁ । ପ୍ରତିକ୍ରମଣ ପଏଜନ ଗଣାଯାଏ । ଆମର ଏଠି ବି ପ୍ରତିକ୍ରମଣ ନାହିଁ । ପ୍ରତିକ୍ରମଣ ଆମେ 'ଚନ୍ଦୁଭାଇ'ଠାରୁ କରାନ୍ତି । କାହିଁକିନା ଏହା ତ ଅକ୍ରମ ଅଟେ, ଏଠି ତ ସବୁ ମାଲ ଭରିହୋଇ ଅଛି ।

ମୁଁ ତ ସାମ୍ନାବାଲାର କେଉଁ ଆତ୍ମାର କଥା କହୁଛି, କାହା ପାଖରେ ପ୍ରତିକ୍ରମଣ କରୁଛେ, ତାହା ଜାଣିଛ ? ପ୍ରତିଷ୍ଠିତ ଆତ୍ମା ପାଖରେ କରୁନେ, ଆମେ ତା'ର ମୂଳ ଶୁଦ୍ଧାତ୍ମା ପାଖରେ କରୁଛେ । ଶୁଦ୍ଧାତ୍ମାଙ୍କ ଉପସ୍ଥିତିରେ ତା ସହିତ ହେଲା, ସେଥିପାଇଁ ଆମେ ପ୍ରତିକ୍ରମଣ କରନ୍ତି । ସେ ଶୁଦ୍ଧାତ୍ମାଙ୍କୁ ଆମେ କ୍ଷମା ମାଗନ୍ତି । ପୁଣି ତା'ର ପ୍ରତିଷ୍ଠିତ ଆତ୍ମା ସହ ଆମକୁ ନେବା-ଦେବା ନାହିଁ ।

ପ୍ରତିକ୍ରମଣ ବି ଅହଂକାରକୁ ହିଁ କରିବାର ଅଛି । କିନ୍ତୁ ଚେତାବନୀ କାହାର ? ପ୍ରଜ୍ଞାର । ପ୍ରଜ୍ଞା କୁହେ, 'ଅତିକ୍ରମଣ କାହିଁକି କଲ ?' ପ୍ରଜ୍ଞା କ'ଣ ଚେତାଏ ? 'ଅତିକ୍ରମଣ କାହିଁକି କଲ ? ତେବେ ପ୍ରତିକ୍ରମଣ କର ।'

ସୂକ୍ଷ୍ମରୁ ସୂକ୍ଷ୍ମ ଦୋଷ ବି ମୋ ଦୃଷ୍ଟିରୁ ବାଦ୍ ପଡ଼େ ନାହିଁ । ସୂକ୍ଷ୍ମରୁ ସୂକ୍ଷ୍ମ, ଅତି-ଅତି ସୂକ୍ଷ୍ମ ଦୋଷ ମୋତେ ତୁରନ୍ତ ଖବର ପଡ଼ିଯାଏ ! ତୁମ ମଧ୍ୟରେ କାହାକୁ ବି ଜଣା ପଡ଼ିବ ନାହିଁ ଯେ ମୋଦ୍ୱାରା ଦୋଷ ହୋଇଛି । କାରଣ ଦୋଷ ସ୍ଥୁଳ ନୁହେଁ ।

**ପ୍ରଶ୍ନକର୍ତ୍ତା :** ଆପଣଙ୍କୁ ଆମର ବି ଦୋଷ ଦେଖାଯାଏ ?

**ଦାଦାଶ୍ରୀ :** ସବୁ ଦୋଷ ଦେଖାଯାଏ କିନ୍ତୁ ମୋ ଦୃଷ୍ଟି ଦୋଷ ଆଡ଼କୁ ନଥାଏ । ମୋତେ ତୁରନ୍ତ ତାହାର ଖବର ପଡ଼ିଯାଏ । କିନ୍ତୁ ମୋ ଦୃଷ୍ଟି ତ ତୁମ ଶୁଦ୍ଧାତ୍ମା ଆଡ଼କୁ ହିଁ ରହେ । ମୋ ଦୃଷ୍ଟି ତୁମ ଉଦୟ କର୍ମ ଉପରେ ରହେ ନାହିଁ । ମୋତେ ଖବର ପଡ଼ି ହିଁ ଯାଏ, ସମସ୍ତଙ୍କ ଦୋଷ ମୋତେ ଖବର ପଡ଼ିଯାଏ । ଦୋଷ ଦେଖାଯାଏ, ତଥାପି ଭିତରେ ମୋତେ ତାହାଦ୍ୱାରା ପ୍ରଭାବ ହୁଏ ନାହିଁ ।

ମୋ ପାଖରେ ତ ଯେତେ ଲୋକ ଦଣ୍ଡର ଯୋଗ୍ୟ ଅଟନ୍ତି, ସେମାନଙ୍କ ପାଇଁ ବି କ୍ଷମା ଥାଏ ! ଏବଂ କ୍ଷମା ବି ସହଜ ଥାଏ । ସାମ୍ନାବାଲାକୁ କ୍ଷମା ମାଗିବାକୁ ପଡ଼େ ନାହିଁ । ଯେଉଁଠି ସହଜ କ୍ଷମା ଦିଆଯାଏ, ସେହିଠାରେ ଲୋକେ ସ୍ୱଚ୍ଛ ହୋଇଯାନ୍ତି । ଆଉ ଯେଉଁଠି କୁହାଯାଏ ଯେ, 'ସାହେବ, କ୍ଷମା କରିବ ।' ସେହିଠାରେ ମଇଳା ହୋଇଛି । ଯେଉଁଠି ସହଜ କ୍ଷମା ମିଳିଯାଏ, ସେଠି ତ ବହୁତ ସ୍ୱଚ୍ଛ ହୋଇଯାନ୍ତି ।

ଯେପର୍ଯ୍ୟନ୍ତ ମୁଁ ସାହଜିକତାରେ ଥାଏ ସେପର୍ଯ୍ୟନ୍ତ ମୋର ପ୍ରତିକ୍ରମଣ ନଥାଏ । ସାହଜିକତାରେ ତୁମକୁ ବି ପ୍ରତିକ୍ରମଣ କରିବାକୁ ପଡ଼ିବ ନାହିଁ । ସାହଜିକତାରେ ଫରକ ଆସିଲା ମାନେ ପ୍ରତିକ୍ରମଣ କରିବାକୁ ପଡ଼ିବ । ତୁମେ ମୋତେ ଯେତେବେଳେ ବି ଦେଖିବ ସେତେବେଳେ ସାହଜିକତାରେ ହିଁ ଦେଖିବ । ଯେତେବେଳେ ଦେଖ ସେତେବେଳେ ମୁଁ ସେହି ସ୍ୱଭାବରେ ହିଁ ଦେଖାଯାଏ । ମୋ ସାହଜିକତାରେ ଫରକ ହୁଏ ନାହିଁ ।

ମୁଁ ତୁମକୁ ପାଞ୍ଚ ଆଜ୍ଞା ଦିଏ । କାହିଁକିନା ଜ୍ଞାନ ତ ଦେଲି, କିନ୍ତୁ ତୁମେ ତା'କୁ ହାତଛଡ଼ା କରିଦେବ । ଅତଃ ଯଦି ଏହି ପାଞ୍ଚ ଆଜ୍ଞାରେ ରହିବ ତେବେ ମୋକ୍ଷରେ ଯିବ । ଆଉ ଛଅ ନମ୍ବର କ'ଣ କହିଲି ? ଯେ ଯେଉଁଠି ଅତିକ୍ରମଣ ହୋଇଯାଏ ସେଠି ପ୍ରତିକ୍ରମଣ କର । ଆଜ୍ଞାର ପାଳନ କରିବା ଯଦି ଭୁଲିଯାଅ ତେବେ ପ୍ରତିକ୍ରମଣ କରିବ । ଭୁଲି ତ ଯାଏ, ମଣିଷ ଅଟେ । କିନ୍ତୁ ଭୁଲି ଗଲ ତାହାର ପ୍ରତିକ୍ରମଣ କରିବ ଯେ 'ହେ ଦାଦା ଭଗବାନ! ଏହି ଦୁଇ ଘଣ୍ଟା ଭୁଲିଗଲି, ଆପଣଙ୍କ ଆଜ୍ଞା ଭୁଲି ଗଲି । କିନ୍ତୁ ମୋତେ ତ ଆଜ୍ଞା ପାଳନ କରିବାର ଅଛି । ମୋତେ କ୍ଷମା କରନ୍ତୁ ।' ତେବେ ପୂର୍ବର ସବୁକିଛି ପାସ୍, ଶହେରୁ ଶହେ ମାର୍କ ପୁରା ।

ଏହା 'ଅକ୍ରମ ବିଜ୍ଞାନ' ଅଟେ । ବିଜ୍ଞାନ ଅର୍ଥାତ ଯାହା ତୁରନ୍ତ ଫଳ ଦିଏ । କର୍ତ୍ତାପଣ ନଥାଏ ତାହାର ନାମ 'ବିଜ୍ଞାନ' ଏବଂ କର୍ତ୍ତାପଣ ଥାଏ ତାହାର ନାମ 'ଜ୍ଞାନ' !

ଯିଏ ବିଚାରଶୀଳ ବ୍ୟକ୍ତି ଅଟେ ତା'କୁ ଏପରି ତ ଲାଗିବ ନିଶ୍ଚିତ ଯେ ମୁଁ କିଛି ବି କରିନାହିଁ, ତଥାପି ଏହା କ'ଣ ?! ଏହା ଅକ୍ରମ ବିଜ୍ଞାନର ବଳିହାରୀ ଅଟେ । 'ଅକ୍ରମ' ! କ୍ରମ-ବ୍ରମ ନୁହେଁ ।

**ଜୟ ସଚ୍ଚିଦାନନ୍ଦ**

## ନଅ କଲମ

୧. ହେ ଦାଦା ଭଗବାନ ! ମୋତେ, କୌଣସି ବି ଦେହଧାରୀ ଜୀବାତ୍ମାର କିଞ୍ଚିତମାତ୍ର ବି ଅହମ୍ ନ ଦୁଭେ(ଆହତ ନ ହୁଏ) ନ ଦୁଭାଯାଏ ଅଥବା ଦୁଭାଇବା ପ୍ରତି ଅନୁମୋଦନ ନ କରାଯାଏ, ଏପରି ପରମ ଶକ୍ତି ଦିଅନ୍ତୁ ।

ମୋତେ, କୌଣସି ବି ଦେହଧାରୀ ଜୀବାତ୍ମାର କିଞ୍ଚିତମାତ୍ର ବି ଅହମ୍ ନ ଦୁଭେ, ଏପରି ସ୍ୟାଦବାଦ ବାଣୀ, ସ୍ୟାଦବାଦ ବର୍ତ୍ତନ(ବ୍ୟବହାର) ଏବଂ ସ୍ୟାଦବାଦ ମନନ କରିବା ପାଇଁ ପରମ ଶକ୍ତି ଦିଅନ୍ତୁ ।

୨. ହେ ଦାଦା ଭଗବାନ ! ମୋତେ, କୌଣସି ବି ଧର୍ମର କିଞ୍ଚିତମାତ୍ର ବି ପ୍ରମାଣ(ମର୍ଯ୍ୟାଦା) ନ ଦୁଭେ, ନ ଦୁଭାଯାଏ ଅଥବା ଦୁଭାଇବା ପ୍ରତି ଅନୁମୋଦନ ନ କରାଯାଏ, ଏପରି ପରମ ଶକ୍ତି ଦିଅନ୍ତୁ ।

ମୋତେ, କୌଣସି ଧର୍ମର କିଞ୍ଚିତମାତ୍ର ବି ପ୍ରମାଣ ନ ଦୁଭାଯାଏ ଏପରି ସ୍ୟାଦବାଦ ବାଣୀ, ସ୍ୟାଦବାଦ ବର୍ତ୍ତନ ଏବଂ ସ୍ୟାଦବାଦ ମନନ କରିବା ପାଇଁ ପରମ ଶକ୍ତି ଦିଅନ୍ତୁ ।

୩. ହେ ଦାଦା ଭଗବାନ ! ମୋତେ, କୌଣସି ବି ଦେହଧାରୀ ଉପଦେଶକ ସାଧୁ, ସାଧ୍ୱୀ ଅବା ଆଚାର୍ଯ୍ୟଙ୍କର ଅବର୍ଣ୍ଣବାଦ, ଅପରାଧ, ଅବିନୟ ନ କରିବା ପାଇଁ ପରମ ଶକ୍ତି ଦିଅନ୍ତୁ ।

୪. ହେ ଦାଦା ଭଗବାନ ! ମୋତେ, କୌଣସି ବି ଦେହଧାରୀ ଜୀବାତ୍ମା ପ୍ରତି କିଞ୍ଚିତମାତ୍ର ବି ଅଭାବ, ତିରସ୍କାର କେବେ ବି ନ କରେ, ନ କରାଏ, ଅଥବା କର୍ତ୍ତା ପ୍ରତି ଅନୁମୋଦନ ନ କରେ, ଏପରି ପରମ ଶକ୍ତି ଦିଅନ୍ତୁ ।

୫. ହେ ଦାଦା ଭଗବାନ ! ମୋତେ, କୌଣସି ବି ଦେହଧାରୀ ଜୀବାତ୍ମା ସହ କେବେ ବି କଠୋର ଭାଷା, ତଂତିଲି ଭାଷା ନ କୁହେ, ନ କୁହାଏ ଅଥବା କହିବା ପାଇଁ ଅନୁମୋଦନ ନ କରେ, ଏପରି ପରମ ଶକ୍ତି ଦିଅନ୍ତୁ ।

କେହି କଠୋର ଭାଷା, ତଂତିଲି ଭାଷା କୁହେ ତେବେ ମୋତେ ମୃଦୁ-ଋଜୁ ଭାଷା କହିବା ପାଇଁ ପରମ ଶକ୍ତି ଦିଅନ୍ତୁ ।

୬. ହେ ଦାଦା ଭଗବାନ ! ମୋତେ, କୌଣସି ବି ଦେହଧାରୀ ଜୀବାତ୍ମା ପ୍ରତି ସ୍ତ୍ରୀ, ପୁରୁଷ ଅଥବା ନପୁଂସକ, କୌଣସି ବି ଲିଙ୍ଗଧାରୀ ହେଉ, ତେବେ ତାଙ୍କ ସମ୍ବନ୍ଧରେ କିଞ୍ଚିତମାତ୍ର ବି ବିଷୟ-ବିକାର ସମ୍ବନ୍ଧୀ ଦୋଷ, ଇଚ୍ଛା, ଚେଷ୍ଟା ଅଥବା ବିଚାର ସମ୍ବନ୍ଧୀ ଦୋଷ ନ କରେ, ନ କରାଏ ଅଥବା କର୍ତ୍ତା ପ୍ରତି ଅନୁମୋଦନ ନ କରେ,ଏପରି  ପରମ ଶକ୍ତି ଦିଅନ୍ତୁ ।

ମୋତେ ନିରନ୍ତର ନିର୍ବିକାର ରହିବା ପାଇଁ ପରମ ଶକ୍ତି ଦିଅନ୍ତୁ ।

୭. ହେ ଦାଦା ଭଗବାନ ! ମୋତେ, କୌଣସି ବି ରସରେ ଲୁବ୍ଧତା ନ ହେଉ, ଏପରି ଶକ୍ତି ଦିଅନ୍ତୁ ।

ସମରସୀ ଆହାର ନେବା ପାଇଁ ପରମ ଶକ୍ତି ଦିଅନ୍ତୁ ।

୮. ହେ ଦାଦା ଭଗବାନ ! ମୋତେ, କୌଣସି ବି ଦେହଧାରୀ ଜୀବାତ୍ମାର ପ୍ରତ୍ୟକ୍ଷ ଅଥବା ପରୋକ୍ଷ, ଜୀବିତ ଅଥବା ମୃତ, କାହାରି କିଞ୍ଚିତମାତ୍ର ବି ଅବର୍ଣ୍ଣବାଦ, ଅପରାଧ, ଅବିନୟ ନ କରେ, ନ କରାଏ ଅଥବା କର୍ତ୍ତା ପ୍ରତି ଅନୁମୋଦନ ନ କରେ ଏପରି ପରମ ଶକ୍ତି ଦିଅନ୍ତୁ ।

୯. ହେ ଦାଦା ଭଗବାନ ! ମୋତେ, ଜଗତ କଲ୍ୟାଣ କରିବାରେ ନିମିତ୍ତ ହେବାପାଇଁ ପରମ ଶକ୍ତି ଦିଅନ୍ତୁ, ଶକ୍ତି ଦିଅନ୍ତୁ, ଶକ୍ତି ଦିଅନ୍ତୁ ।

(ଏତିକି ତୁମକୁ ଦାଦା ଭଗବାନଙ୍କ ପାଖରେ ମାଗିବାର ଅଛି । ଏହା ପ୍ରତିଦିନ ଯନ୍ତ୍ରବତ୍ ପଢ଼ିବାର ଜିନିଷ ନୁହେଁ, ହୃଦୟରେ ରଖିବାର ଜିନିଷ ଅଟେ । ଏହା ପ୍ରତିଦିନ ଉପଯୋଗପୂର୍ବକ ଭାବନା କରିବାର ଜିନିଷ ଅଟେ । ଏତିକି ପାଠରେ ସମସ୍ତ ଶାସ୍ତ୍ରର ସାର ଆସିଯାଏ ।)



## ଶୁଦ୍ଧାତ୍ମାଙ୍କ ପ୍ରତି ପ୍ରାର୍ଥନା

ହେ ଅନ୍ତର୍ଯ୍ୟାମି ପରମାତ୍ମା ! ଆପଣ ପ୍ରତ୍ୟେକ ଜୀବମାତ୍ର ଭିତରେ ବିରାଜମାନ ଅଛନ୍ତି, ଠିକ ସେହିପରି ମୋ ଭିତରେ ମଧ୍ୟ ବିରାଜମାନ ଅଛନ୍ତି । ଆପଣଙ୍କ ସ୍ୱରୂପ ହିଁ ମୋ ସ୍ୱରୂପ ଅଟେ । ମୋ ସ୍ୱରୂପ ଶୁଦ୍ଧାତ୍ମା ଅଟେ ।

ହେ ଶୁଦ୍ଧାତ୍ମା ଭଗବାନ ! ମୁଁ ଆପଣଙ୍କୁ ଅଭେଦ ଭାବରେ ଅତ୍ୟନ୍ତ ଭକ୍ତିପୂର୍ବକ ନମସ୍କାର କରୁଛି । ଅଜ୍ଞାନତାବଶ ମୁଁ ଯେଉଁ ଯେଉଁ★★ଦୋଷ କରିଛି, ସେ ସବୁ ଦୋଷଗୁଡ଼ିକୁ ଆପଣଙ୍କ ସମ୍ମୁଖରେ ପ୍ରକାଶ କରୁଛି । ସେ ସବୁ ପାଇଁ ହୃଦୟପୂର୍ବକ ବହୁତ ପଶ୍ଚାତାପ କରୁଛି ଏବଂ ଆପଣଙ୍କୁ କ୍ଷମା-ପ୍ରାର୍ଥନା କରୁଛି । ହେ ପ୍ରଭୁ! ମୋତେ କ୍ଷମା କରନ୍ତୁ, କ୍ଷମା କରନ୍ତୁ, କ୍ଷମା କରନ୍ତୁ ଆଉ ପୁଣି ଏପରି ଦୋଷ ନ କରେ, ଏପରି ଆପଣ ମୋତେ ଶକ୍ତି ଦିଅନ୍ତୁ, ଶକ୍ତି ଦିଅନ୍ତୁ, ଶକ୍ତି ଦିଅନ୍ତୁ ।

ହେ ଶୁଦ୍ଧାତ୍ମା ଭଗବାନ ! ଆପଣ ଏପରି କୃପା କରନ୍ତୁ ଯେପରି ମୋତେ ଭେଦଭାବ ଛୁଟିଯାଉ ଏବଂ ଅଭେଦ ସ୍ୱରୂପ ପ୍ରାପ୍ତ ହେଉ । ମୁଁ ଆପଣଙ୍କ ସହ ଅଭେଦ ସ୍ୱରୂପରେ ତନ୍ମୟାକାର ରହେଁ ।

★★ ଯେଉଁ ଯେଉଁ ଦୋଷ ହୋଇଛି, ସେ ସବୁକୁ ମନରେ ପ୍ରକାଶ କରନ୍ତୁ ।



## ପ୍ରତିକ୍ରମଣ ବିଧି

ପ୍ରତ୍ୟକ୍ଷ ଦାଦା ଭଗବାନଙ୍କ ସାକ୍ଷୀରେ, ଦେହଧାରୀ ......... (ଯାହା ପ୍ରତି ଦୋଷ ହୋଇଥିବ, ସେ ବ୍ୟକ୍ତିର ନାମ)ର ମନ-ବଚନ-କାୟାର ଯୋଗ, ଭାବକର୍ମ-ଦ୍ରବ୍ୟକର୍ମ-ନୋକର୍ମରୁ ଭିନ୍ନ, ଏପରି ହେ ଶୁଦ୍ଧାତ୍ମା ଭଗବାନ ! ଆପଣଙ୍କ ସାକ୍ଷୀରେ, ଆଜି ଦିନ ପର୍ଯ୍ୟନ୍ତ ମୋ ଦ୍ୱାରା ଯେଉଁ ଯେଉଁ ★★ ଦୋଷ ହୋଇଛି, ସେ ସବୁ ପାଇଁ ମୁଁ କ୍ଷମା ମାଗୁଛି, ହୃଦୟପୂର୍ବକ ବହୁତ ପଶ୍ଚାତାପ କରୁଛି । ମୋତେ କ୍ଷମା କରନ୍ତୁ ଏବଂ ପୁଣି ଏପରି ଦୋଷ କେବେ ମଧ୍ୟ କରିବି ନାହିଁ, ଏପରି ଦୃଢ଼ ନିଶ୍ଚୟ କରୁଛି । ସେଥିପାଇଁ ମୋତେ ପରମ ଶକ୍ତି ଦିଅନ୍ତୁ ।

★★ କ୍ରୋଧ-ମାନ-ମାୟା-ଲୋଭ, ବିଷୟ-ବିକାର, କଷାୟ ଆଦି ଦ୍ୱାରା ସେହି ବ୍ୟକ୍ତିକୁ ଯାହା ବି ଦୁଃଖ ପହଞ୍ଚାଇ ଥିବ, ସେ ଦୋଷଗୁଡ଼ିକୁ ମନରେ ସ୍ମରଣ କରନ୍ତୁ ।



## दादा भगवान फाउन्डेशन के द्वारा प्रकाशित पुस्तकें

१. ज्ञानी पुरुष की पहचान
२. सर्व दु :खो से मुक्ति
३. कर्म का सिद्धांत
४. आत्मबोध
५. मैं कौन हूँ ?
६.वर्तमान तीर्थकंर श्री सीमंधर स्वामी
७.भुगते उसी की भूल
८. एडजस्ट एवरीव्हेयर
९. टकराव टालिए
१०. हुआ सो न्याय
११. चिंता
१२. क्रोध
१३. प्रतिक्रमण
१४. दादा भगवान कौन ?
१५. पैसों का व्यवहार
१६. अंत : करण का स्वरुप
१७. जगत कर्ता
१८. त्रिमंत्र
१९. भावना से सुधरे जन्मोंजन्म
२०. माता-पिता और बच्चों का व्यवहार
२१. प्रेम
२२. समझ से प्राप्त ब्रह्मचर्य
२३. दान
२४. मानव धर्म
२५. सेवा-परोपकार
२६. मृत्यु समय, पहले और पश्चात
२७. निजदोष दर्शन से...निर्दोष
२८. पति-पत्नि का दिव्य व्यवहार
२९. क्लेश रहित जीवन
३०. गुरु-शिष्य
३१. अहिंसा
३२. सत्य-असत्य के रहस्य
३३. चमत्कार
३४. पाप-पुण्य
३५. वाणी,व्यवहार में...
३६. कर्म का विज्ञान
३७. आप्तवाणी - १
३८. आप्तवाणी - २
३९. आप्तवाणी - ३
४०. आप्तवाणी - ४
४१. आप्तवाणी - ५
४२. आप्तवाणी - ६
४३. आप्तवाणी - ७
४४. आप्तवाणी - ८
४५.आप्तवाणी - ९
४६.आप्तवाणी - १३(पूर्वार्ध)
४७.आप्तवाणी - १३(उत्तरार्ध)
४५. समझ से प्राप्त ब्रह्मचर्य (पूर्वार्ध-उत्तरार्ध)

★ ଦାଦା ଭଗବାନ ଫାଉଣ୍ଡେଶନ ଦ୍ୱାରା ଗୁଜରାଟୀ ଭାଷାରେ ବି ଅନେକ ପୁସ୍ତକ ପ୍ରକାଶିତ ହୋଇଛି । ୱେବସାଇଟ୍ **www.dadabhagwan.org** ରେ ମଧ୍ୟ ଆପଣ ଏ ସମସ୍ତ ପୁସ୍ତକ ପ୍ରାପ୍ତ କରିପାରିବେ ।

★ଦାଦା ଭଗବାନ ଫାଉଣ୍ଡେଶନ ଦ୍ୱାରା ପ୍ରତ୍ୟେକ ମାସ ହିନ୍ଦୀ, ଗୁଜରାଟୀ ତଥା ଇଂରାଜୀ ଭାଷାରେ "ଦାଦାବାଣୀ" ମାଗାଜିନ୍ ପ୍ରକାଶିତ ହେଉଛି ।

**ଓଡ଼ିଆ ପୁସ୍ତକ :**

୧. ଆତ୍ମସାକ୍ଷାତ୍କାର
୨. ଘର୍ଷଣ ଟାଳନ୍ତୁ
୩. ମୁଁ କିଏ ?
୪. ଏଡ଼ଜଷ୍ଟ ଏଭ୍ରିହ୍ୱେୟାର
୫. ଚିନ୍ତା
୬. ମାନବ ଧର୍ମ
୭. କ୍ରୋଧ
୮. ଯାହା ହେଲା ତାହା ନ୍ୟାୟ
୯. ମୃତ୍ୟୁ ସମୟରେ, ପୂର୍ବରୁ ଏବଂ ପରେ
୧୦. ଯିଏ ଭୋଗେ ତା'ର ଭୁଲ
୧୧. ସେବା ପରୋପକାର
୧୨. ମାତା-ପିତା ଏବଂ ପିଲାଙ୍କ ବ୍ୟବହାର
୧୩. ପ୍ରତିକ୍ରମଣ

# ପ୍ରାପ୍ତିସ୍ଥାନ

## ଦାଦା ଭଗବାନ ପରିବାର


| | | |
|---|---|---|
| ଅଡ଼ାଲଜ | : | **ତ୍ରିମନ୍ଦିର**, ସୀମନ୍ଧର ସିଟୀ, ଅହମଦାବାଦ-କଲୋଲ ହାଇୱେ, ପୋଷ୍ଟ-ଅଡ଼ାଲଜ, ଜିଲ୍ଲା-ଗାନ୍ଧୀନଗର, ଗୁଜରାଟ-୩୮୨୪୨୧,ଫୋନ-(୦୭୯)୩୯୮୩୦୧୦୦ |
| ରାଜକୋଟ | : | **ତ୍ରିମନ୍ଦିର**, ଅହମଦାବାଦ-ରାଜକୋଟ ହାଇୱେ, ତରଘଡ଼ିୟା ଚୋକଡ଼ି(ସର୍କଲ), ପୋଷ୍ଟ-ମାଲିୟାସଣ,ଜିଲ୍ଲା-ରାଜକୋଟ, ଫୋନ-୯୯୨୪୩୪୩୪୭୮ |
| ଭୁଜ୍ | : | **ତ୍ରିମନ୍ଦିର**, ହିଲ୍ ଗାର୍ଡେନ ପଛ,ଏୟାରପୋର୍ଟ ରୋଡ଼.ଫୋନ-(୦୨୮୩୨) ୨୯୦୧୨୩ |
| ଅଞ୍ଜାର | : | **ତ୍ରିମନ୍ଦିର**, ଅଞ୍ଜାର-ମୁନ୍ଦ୍ର ରୋଡ,ସୀନୋଗ୍ରା ପାଟୀୟା ପାଖ,ସୀନୋଗ୍ରା ଗାଁ, ତା.-ଅଞ୍ଜାର,ଫୋନ-୯୯୨୪୩୪୬୬୨୨ |
| ମୋର୍‌ବୀ | : | **ତ୍ରିମନ୍ଦିର,** ମୋରବୀ-ନବଲଖି ହାଇୱେ, ପୋ:ଜୟପୁର, ଜିଲ୍ଲା-ରାଜକୋଟ, ଫୋନ-(୦୨୮୨୨)୨୯୭୦୯୭ |
| ସୁରେନ୍ଦ୍ରନଗର | : | **ତ୍ରିମନ୍ଦିର,** ସୁରେନ୍ଦ୍ରନଗର-ରାଜକୋଟ ହାଇୱେ, ଲୋକବିଦ୍ୟାଳୟ ପାଖ, ମୂଳି ରୋଡ, ୯୭୩୭୦୪୮୩୨୨ |
| ଅମ୍‌ରେଲୀ | : | **ତ୍ରିମନ୍ଦିର,** ଲିଲିୟା ରୋଡ, ବାଇପାସ ଚୋକଡି, ଖାରାବାଡି, ୯୯୨୪୩୪୪୪୬୦ |
| ଗୋଧ୍ରା | : | **ତ୍ରିମନ୍ଦିର,** ଭାମେୟା ଗାଁ, ଏଫ ସି ଆଇ ଗୋଡାଉନ୍ ସାମନା, ଗୋଧ୍ରା । (ଜି-ପଞ୍ଚମହାଲ) ଫୋନ-(୦୨୬୭୨) ୨୬୨୩୦୦ |
| ବଡ଼ୋଦରା | : | ବାବରୀୟା କଲେଜ ପାଖ,ବଡ଼ୋଦରା-ସୁରଟ ହାଇୱେ,NH-8 , ବରଣାମା ଗାଁ. ଫୋନ-୯୫୭୪୦୦୧୫୫୭ |
| ଅହମଦାବାଦ | : | **ଦାଦା ଦର୍ଶନ,** ୫, ମମତା ପାର୍କ ସୋସାଇଟୀ, ନବଗୁଜରାଟ କୋଲେଜ ପାଖ, ଉସ୍ମାନପୁର,ଅହମଦାବାଦ-୩୮୦୦୧୪,ଫୋନ-(୦୭୯) ୨୭୫୪୦୪୦୮ |
| ବଡ଼ୋଦରା | : | ଦାଦା ମନ୍ଦିର, ୧୭, ମାମା କି ପୋଲ-ମୁହଲ୍ଲା, ରାବପୁରା ପୋଲିସ ଷ୍ଟେସନ ପାଖ, ସଲାଟୱାଡ଼ା, ବଡ଼ୋଦରା,ଫୋନ-୯୯୨୪୩୪୩୩୩୫ |

| | | | |
|---|---|---|---|
| ମୁମ୍ବାଇ | : ୯୩୨୩୫୨୮୯୦୧ | ଦିଲ୍ଲୀ | : ୯୮୧୦୦୯୮୫୬୪ |
| କୋଲକତା | : ୯୮୩୦୦୯୩୨୩୦ | ଚେନ୍ନାଇ | : ୯୩୮୦୧୫୯୯୫୭ |
| ଜୟପୁର | : ୯୩୫୧୪୦୮୨୮୫ | ଭୋପାଲ୍ | : ୯୪୨୫୦୨୪୪୦୫ |
| ଇନ୍ଦୋର | : ୯୦୩୯୯୩୬୧୭୩ | ଜବଲପୁର | : ୯୪୨୫୧୬୦୪୨୮ |
| ରାୟପୁର | : ୯୩୨୯୬୪୪୪୩୩ | ଭିଲାଇ | : ୯୮୨୭୪୮୧୩୩୬ |
| ପାଟନା | : ୭୩୫୨୭୨୩୧୩୨ | ଅମରାବତୀ | : ୯୪୨୨୯୧୫୦୬୪ |
| ବାଙ୍ଗାଲୋର | : ୯୫୯୦୯୭୯୦୯୯ | ହାଇଦ୍ରାବାଦ | : ୯୯୮୯୮୭୭୭୮୬ |
| ପୁନେ | : ୯୪୨୨୬୬୦୪୯୭ | ଜଲନ୍ଧର | : ୯୮୧୪୦୬୩୦୪୩ |
| ଓଡିଶା | : ୮୭୬୩୦୭୩୧୧୧ | | |

**U.S.A.: DBVI, Tel . :**+1 877-505-DADA (3232)
**Email :** info@us.dadabhagwan.org

**U.K. :** +44 330-111-DADA (3232)
**Kenya :** +254 722 722 063
**Australia :** +61 421127947
**UAE** : +971 557316937
**Singapore** : +65 81129229
**New Zealand** : +64 21 0376434

**Website : www.dadabhagwan.org**
**Email : info@dadabhagwan.org**

# ପ୍ରତିକ୍ରମଣ ବିଧି

ପ୍ରତ୍ୟକ୍ଷ ଦାଦା ଭଗବାନଙ୍କ ସାକ୍ଷୀରେ, ଦେହଧାରୀ ★ ର ମନ-ବଚନ-କାୟାର ଯୋଗ, ଭାବକର୍ମ-ଦ୍ରବ୍ୟକର୍ମ-ନୋକର୍ମରୁ ଭିନ୍ନ ଏପରି ହେ ଶୁଦ୍ଧାତ୍ମା ଭଗବାନ! ଆପଣଙ୍କ ସାକ୍ଷୀରେ, ଆଜି ଦିନ ପର୍ଯ୍ୟନ୍ତ ଯେଉଁ ଯେଉଁ ★★ ଦୋଷ ହୋଇଛି, ସେ ସବୁ ପାଇଁ ମୁଁ କ୍ଷମା ମାଗୁଛି, ହୃଦୟପୂର୍ବକ ପଶ୍ଚାତାପ କରୁଛି । ଆଲୋଚନା, ପ୍ରତିକ୍ରମଣ, ପ୍ରତ୍ୟାଖ୍ୟାନ କରୁଛି ଏବଂ ପୁଣି ଏପରି ଦୋଷ କେବେ ମଧ୍ୟ କରିବି ନାହିଁ, ଏପରି ଦୃଢ଼ ନିଶ୍ଚୟ କରୁଛି । ମୋତେ କ୍ଷମା କରନ୍ତୁ, କ୍ଷମା କରନ୍ତୁ, କ୍ଷମା କରନ୍ତୁ ।

ହେ ଦାଦା ଭଗବାନ! ମୋତେ ଏପରି କୌଣସି ବି ଦୋଷ ନକରିବା ପାଇଁ ପରମ ଶକ୍ତି ଦିଅନ୍ତୁ, ଶକ୍ତି ଦିଅନ୍ତୁ, ଶକ୍ତି ଦିଅନ୍ତୁ ।

★ ଯାହା ପ୍ରତି ଦୋଷ ହୋଇଥିବ, ସେ ବ୍ୟକ୍ତିର ନାମ ନେବ ।

★★ ଯେଉଁ ଯେଉଁ ଦୋଷ ହୋଇଥିବ, ସେ ସମସ୍ତ ଦୋଷ ମନରେ ପ୍ରକାଶ କରିବ ।

[ ଆପଣ ଶୁଦ୍ଧାତ୍ମା ଅଟନ୍ତି ଏବଂ ଯିଏ ଦୋଷ କରୁଛି, ତା' ପାଖରୁ ପ୍ରତିକ୍ରମଣ କରାଇବାର ଅଛି । ଚନ୍ଦୁଭାଇ ପାଖରୁ ଦୋଷର ପ୍ରତିକ୍ରମଣ କରାଇବାର ଅଛି (ପାଠକ ଚନ୍ଦୁଭାଇ ସ୍ଥାନରେ ନିଜ ନାମ ବୁଝନ୍ତୁ) । ]




dadabhagwan.org


ISBN 978-93-87551-40-4
9 789387 551404

Printed in India

Price ₹40